# ବିନୋବାଙ୍କ ଦୃଷ୍ଟିରେ ଗାନ୍ଧୀ ଓ ମାର୍କସ୍



ଅନୁବାଦ

ବନମାଳୀ ବାରିକ

ସଂଘମିତ୍ରା ବେହେରା

ଗାନ୍ଧୀ-ବିନୋବା ବିଚାରମାଳା (୧)

# ବିନୋବାଙ୍କ ଦୃଷ୍ଟିରେ ଗାନ୍ଧୀ ଓ ମାର୍କସ୍

ଅନୁବାଦ

ବନମାଳୀ ବାରିକ

ସଂଘମିତ୍ରା ବେହେରା

ଓଡ଼ିଶା ଭୂଦାନ କର୍ମଚାରୀ ସଂଘ

ଭୁବନେଶ୍ୱର

# ବିନୋବାଙ୍କ ଦୃଷ୍ଟିରେ ଗାନ୍ଧୀ ଓ ମାର୍କସ୍

**ଅନୁବାଦ**

ବନମାଳୀ ବାରିକ, ସଂଘମିତ୍ରା ବେହେରା

**ପ୍ରକାଶକ**

ଓଡ଼ିଶା ଭୂଦାନ କର୍ମଚାରୀ ସଂଘ ଭୁବନେଶ୍ୱର

**ପ୍ରଥମ ପ୍ରକାଶ**

୨୦୧୦

**ମୁଦ୍ରଣ**

ଗୀତାୟନ, କଟକ- ୪

**ମୂଲ୍ୟ : ୧୦**

## ।। ଦୁଇପଦ ।।

ସେତେବେଳେ ମୁଁ ଅନୁଗୁଳ କଲେଜରେ ଅଧ୍ୟାପନା କରୁଥାଏ । ରାଜନୈତିକ ଜୀବନକୁ ଉଚିତ୍ ମାର୍ଗରେ ନେବାପାଇଁ ନବକୃଷ୍ଣ ଚୌଧୁରୀ ଓ ମାଳତୀ ଦେବୀ ପ୍ରାୟ ସେ ଅଞ୍ଚଳରେ ସଭା ସମିତି ଓ ସଂଗଠନ କାର୍ଯ୍ୟରେ ସାହାଯ୍ୟ କରିବାକୁ ଅଧିକାଂଶ ସମୟରେ ଅନୁରୋଧ କରୁଥିଲେ । ସେତେବେଳକୁ ଶ୍ରୀଯୁକ୍ତ ଚୌଧୁରୀ ଭୂଦାନ କାର୍ଯ୍ୟରେ ବିଶେଷ ଧ୍ୟାନ ଦେଇଥାନ୍ତି । ବିନୋବା ଭୂଦାନ ଯାତ୍ରାରେ ତାଳଚେର ଦେଇଯିବା କଥା । ତେଣୁ ଶ୍ରୀଯୁକ୍ତ ଚୌଧୁରୀ ଓ ମାଳତୀ ଦେବୀ ମତେ ତାଙ୍କ ସହିତ ତାଳଚେର ଯିବାକୁ କହିଲେ । ମୁଁ ସେହିମାନଙ୍କ ଗହଣରେ ତାଳଚେରଠାରେ ବିନୋବାଙ୍କୁ ସାକ୍ଷାତ କରିବା ସମ୍ଭବ ହୋଇଥିଲା । ଏହା ଷାଠିଏ ଦଶକର କଥା । ସେତେବେଳେ ଭୂଦାନର ଆବଶ୍ୟକତା ଓ ଅନାବଶ୍ୟକତା ସଂପର୍କରେ ଯୋର ବାଦାନୁବାଦ ଚାଲିଥାଏ । କେହିକେହି ଏହାକୁ 'ଦାରିଦ୍ର୍ୟବଣ୍ଟନ'ର ଆଖ୍ୟା ଦେଇଥାନ୍ତି । ମୋ ମତରେ ଭୂଦାନ ପରବର୍ତ୍ତୀ କାଳରେ ଗ୍ରାମଦାନ, ଶ୍ରମଦାନ, ବୁଦ୍ଧିଦାନ, ଜୀବନଦାନ ଆଦି ସେ କାଳରେ ଭାରତୀୟ ସଂସ୍କୃତିର ପ୍ରୟୋଗାତ୍ମକ ଦିଗ ଥିଲା । ଭାରତରେ ଏକ ଅର୍ଥନୈତିକ ଅହିଂସ ବିପ୍ଳବ କ୍ଷେତ୍ରରେ ଭୂଦାନର ଅବଦାନକୁ ଅସ୍ୱୀକାର କରିହେବ ନାହିଁ ।

ବିନୋବା ଥିଲେ ବହୁ ଭାଷାଭାଷୀ ଜଣେ ପଣ୍ଡିତ ଲୋକ । ଜୀବନକୁ ଶୁଦ୍ଧ ଓ ପରିମାର୍ଜିତ କରିବା କ୍ଷେତ୍ରରେ ତାଙ୍କର ବାଣୀ ଜନମାନସକୁ ବହୁ ପରିମାଣରେ ପ୍ରଭାବିତ କରୁଥିଲା । ତାଙ୍କର 'ଗୀତା ପ୍ରବଚନ' ବହି ବିଶେଷ ଆଦୃତ ହେଉଥିଲା । ପରବର୍ତ୍ତୀ କାଳରେ ବିନୋବାଙ୍କ ନାମରେ ବହୁ ଅନୁଷ୍ଠାନ ଗଢ଼ି ଉଠିଛି । ତାଙ୍କର ନିର୍ଦ୍ଦେଶିତ କାର୍ଯ୍ୟକ୍ରମ ଅନ୍ତ ବହୁତେ ଏବେ ବି ଚାଲୁ ରହିଛି । ଗାନ୍ଧିଜୀ ମୁକ୍ତି ସଂଗ୍ରାମ କାଳରେ ବିନୋବାଙ୍କୁ ପ୍ରଥମ ସତ୍ୟାଗ୍ରହୀ ଭାବରେ ନିର୍ବାଚିତ କରିଥିଲେ । ଗାନ୍ଧିଜୀଙ୍କ ମାନସ ଅଧ୍ୟୟନ କାଳରେ ବିନୋବା ଓ ଜୟପ୍ରକାଶଙ୍କ ଚିନ୍ତନକୁ ମଧ୍ୟ ଅନୁଧ୍ୟାନ କରିବାକୁ ପଡ଼ିଥାଏ । ଏ ଦିଗରେ ଭାରତର ବିଭିନ୍ନ ଭାଷାରେ ବହୁ ପୁସ୍ତକ ପ୍ରକାଶିତ ହୋଇଛି । ନିର୍ମଳା ଦେଶପାଣ୍ଡେ ବିନୋବାଙ୍କ ଜୀବନୀ ପ୍ରକାଶ କରିଛନ୍ତି । କିନ୍ତୁ ଓଡ଼ିଆ ଭାଷାରେ ବିଶେଷ ଆଲୋଚନା ପୁସ୍ତକ ପ୍ରକାଶ ପାଇଥିବାର ଲକ୍ଷ୍ୟ କରିନାହାନ୍ତି । ଗତ କେତେବର୍ଷ ତଳେ ଶାନ୍ତିଦେବୀଙ୍କର ଏକ ଅନୁବାଦ ପୁସ୍ତକ ବିନୋବାଙ୍କ 'ଦିବ୍ୟ ସାନ୍ନିଧ୍ୟ' ପଢ଼ିବା ଓ ପ୍ରକାଶ କରିବା ମୋ ପକ୍ଷରେ ସମ୍ଭବ ହୋଇଥିଲା ।

ଗତ କେତେବର୍ଷ ତଳେ ନବଜୀବନ ପ୍ରକାଶନ ସଂସ୍ଥା ଦ୍ୱାରା କେ.ଜି. ମଶ୍ରୁୱାଲାଙ୍କର 'ଗାନ୍ଧି ଓ ମାର୍କ୍ସ' ପୁସ୍ତକ ପଢ଼ିବାର ସୁଯୋଗ ପାଇଥିଲି । ଏହି ପୁସ୍ତକର ଭୂମିକାରେ ବିନୋବା ଭାବେ ଗାନ୍ଧି ଓ ମାର୍କ୍ସଙ୍କ ଚିନ୍ତନ ସଂପର୍କରେ ଯେଉଁ ତୁଳନାତ୍ମକ ବ୍ୟାଖ୍ୟା କରିଛନ୍ତି, ତାହା ମତେ ବିଶେଷ ଆକୃଷ୍ଟ କଲା । ମନେ ହେଲା ସାଂପ୍ରତିକ ସମୟରେ ଏହାର ମୂଲ୍ୟ ରହିଛି । ବିଶେଷ ଭାବରେ ଏବର ଯୁବକ ଯୁବତୀମାନେ ଏହା ପଢ଼ିବା ଆବଶ୍ୟକ । ଫଳରେ ସମାଜ ଜୀବନକୁ ଶୁଦ୍ଧ କରିବା ସମ୍ଭବ ହୋଇପାରେ ।

ମୋର ଅନୁରୋଧ ରକ୍ଷାକରି ବନମାଳୀ ବାରିକ ଓ ପ୍ରାଧ୍ୟାପିକା ସଂଘମିତ୍ରା ବେହେରା ଏହି ପୁସ୍ତକ ରଚନା କରିବା ଦିଗରେ ଆଗ୍ରହ ପ୍ରକାଶ କରିଥିଲେ । ମଶ୍ରୁ ୱାଲାଙ୍କ ପୁସ୍ତକରେ ଥିବା ବିନୋବାଙ୍କ ଭୂମିକା ଅବଲମ୍ବନରେ ଏହି ପୁସ୍ତକ ପ୍ରସ୍ତୁତ କରାଯାଇଛି । ଆଶା କରୁଛି ଗାନ୍ଧି ଓ ମାର୍କ୍ସଙ୍କର ଚିନ୍ତନ କ୍ଷେତ୍ରରେ ଏହା ଯୁବକମାନଙ୍କୁ ସାହାଯ୍ୟ କରିବ । ଓଡ଼ିଶା ଭୂଦାନ ଯଜ୍ଞ ସମିତିର କର୍ମଚାରୀ ସଂଘ ଏହା ପ୍ରକାଶ କରିବାକୁ ଆଗ୍ରହ ପ୍ରଦର୍ଶନ କରିଥିବାରୁ ଏହାର ସଂପାଦକ ଶ୍ରୀ ଗୌରାଙ୍ଗ ମହାପାତ୍ରଙ୍କୁ ଧନ୍ୟବାଦ ଦେଉଛି ।

ଆଚାର୍ଯ୍ୟ ଭାବାନନ୍ଦ

## ।। ପଦେ ।।

ଗାନ୍ଧିବାଦ ଓ ମାର୍କ୍ସବାଦକୁ ନେଇ ବହୁଦିନରୁ ପରସ୍ପର ବିରୋଧୀ ଆଲୋଚନାମାନ ଯୁବପୀଢ଼ିମାନଙ୍କ ମଧ୍ୟରେ ଚାଲିଆସୁଅଛି । ସମାଜର ଯୁବବର୍ଗ ଏହାର ସଂରଚନା ଓ ପରିଚାଳନା ଉପରେ ଯେପରି ଆଗରୁ ଆଲୋଚନା କରୁଥିଲେ ଓ ନିଜକୁ ଭବିଷ୍ୟତ ସମାଜର ପ୍ରତିନିଧି ଭାବି ଏକ ନେତୃତ୍ୱ ସୃଷ୍ଟିର ଉଦ୍ୟମ କରୁଥିଲେ ଓ ନିଜକୁ ଭବିଷ୍ୟତ ସମାଜର ପ୍ରତିନିଧି ଭାବି ଏକ ନେତୃତ୍ୱ ସୃଷ୍ଟିର ଉଦ୍ୟମ କରୁଥିଲେ ତାହା ଏବେ ପ୍ରାୟତଃ ବନ୍ଦ ହୋଇଆସୁଛି । ସର୍ବୋଦୟୀ ହୁଅନ୍ତୁ କିମ୍ବା ସାମ୍ୟବାଦୀ ହୁଅନ୍ତୁ, ସମସ୍ତେ ଏବେ ସଂକଟର ସମ୍ମୁଖୀନ । ନୂତନ ପୀଢ଼ି ନିଜର ବୃତ୍ତି ବ୍ୟବସାୟ ବ୍ୟତୀତ ଅନ୍ୟକଥାରେ ପଶିବାକୁ ଅନିଚ୍ଛା ପ୍ରକାଶ କରିଆସୁଛନ୍ତି । ତେଣୁ ସମାଜ ଏବେ ମୁଖ୍ୟତଃ ଲୁଟେରାମାନଙ୍କ କବଳକୁ ଯିବାରେ ଲାଗିଛି । ବୃତ୍ତି ବ୍ୟବସାୟ ମନ୍ଦ ନୁହେଁ, ମାତ୍ର ଯେଉଁ ସମାଜ ଲୁଟେରାମାନଙ୍କ ଦ୍ୱାରା ଅନ୍ୟାୟ ଓ ଲାଞ୍ଚଖୋରୀ ସ୍ୱଭାବର ପ୍ରଭାବ ବିସ୍ତାର କରିସାରିଛି, ସେଠାରେ ଯେକୌଣସି ବ୍ୟକ୍ତି ଯେତେ ଭଲ ବୃତ୍ତି ବା ବ୍ୟବସାୟ କଲେ ମଧ୍ୟ ଅଦୌ ନିରାପଦ ହୋଇ ବଞ୍ଚି ପାରିବନାହିଁ । ଉପରୋକ୍ତ ଦୁଇଟି ଦର୍ଶନ ଦୁଃଖି, ଗରିବ ଓ ନିଷ୍ପେସିତ ବର୍ଗ ପ୍ରତି ନିସ୍ୱାର୍ଥ ତ୍ୟାଗ ଓ ସମବେଦନା ତିଆରି କରିବାରେ ପ୍ରକୃଷ୍ଟ ମାର୍ଗ । କିନ୍ତୁ ଏହା ଧୀରେଧୀରେ ସମାଜରେ ଲୋପ ପାଉଥିବାର ଦେଖାଯାଉଛି ।

ଏଣୁ ଏକ ସନ୍ତୁଳିତ ସମାଜର ସ୍ୱପ୍ନ ସାକାର ହେବା ଆଦୌ ସମ୍ଭବପର ମନେହେଉନାହିଁ । ଏଥିପାଇଁ ଆମ ସମସ୍ତଙ୍କର ନୈତିକ ଦାୟିତ୍ୱ ରହିଛି । ବିଶେଷ ଭାବରେ ଯୁବପୀଢ଼ିଙ୍କୁ ଏକ ଉତ୍ତରଦାୟୀ ସମାଜ ଗଠନରେ ଅଂଶୀଦାର କରାଇବା ଉଦ୍ୟମ ପାଇଁ ମଧ୍ୟ ସହଯୋଗ ମିଳିବା ଅତ୍ୟନ୍ତ ଜରୁରୀ । ସରଳ ଭାବରେ କହିଲେ ଯୁବସମାଜକୁ ଯେଉଁ ଅସାମାଜିକ ତତ୍ତ୍ୱମାନ ଦିଗହରା କରାଇ ଏକ ବିକୃତ ସମାଜ ଗଠନ ପାଇଁ ସତତ ଚେଷ୍ଟିତ, ସେ ସମାଜରେ ନିଷ୍ପେସିତ ବର୍ଗମାନଙ୍କ ପ୍ରତି ସମବେଦନା ପରିବର୍ତ୍ତେ ଘୃଣିତ ଦାରିଦ୍ର୍ୟର୍ ଅସୁନ୍ଦର ରୂପକୁ ନେଇ ମନଭିତରେ ସୁଖୀ ଦୁଃଖିର ପାର୍ଥକ୍ୟ ଭାବନାର ଜାଲ ତିଆରି କରୁଛନ୍ତି ଏବଂ ଏକ ନୂତନ ଶୋଷକ ସମାଜର କର୍ଣ୍ଣଧାର ଭାବେ ଯୁବସମାଜକୁ ଗଠନ କରିବାର ଉଦ୍ୟମ ଚାଲୁରଖିଛନ୍ତି । ଏହାକୁ ପ୍ରତିହତ କରିବାର ସମୟ ଆସିଛି ।

ଏହି ପୁସ୍ତିକାରେ ବିନୋବାଜୀଙ୍କ ମନର କଥା ପ୍ରତିଫଳିତ ହୋଇଛି । ଗାନ୍ଧିଙ୍କଠାରୁ ବିନୋବାଜୀ ଅନେକ କ୍ଷେତ୍ରରେ ବାସ୍ତବତାକୁ ହିଁ ପ୍ରକାଶ କରନ୍ତି । ଯଥା- ଗାନ୍ଧିଜୀଙ୍କ ତିନିଗୋଟି ମୌଳିକ ତତ୍ତ୍ୱକୁ ସାବଲୀଳ ଢଙ୍ଗରେ ପରିପ୍ରକାଶ କରିଛନ୍ତି । ଆଗାମୀ ପିଢ଼ୀକୁ ଯେଉଁ ଯେଉଁ ବାର୍ତ୍ତାମାନ ନୂତନ ଦିଗ୍‌ଦର୍ଶନ ଦେଇ ପାରିବ, ବିନୋବାଜୀ ଠିକ୍ ସେହିପରି ଭାଷାରେ ଭାବକୁ ଆବେଗର ସହ ଯୋଡ଼ିଛନ୍ତି । ଏହା ସାମାଜିକ - ଅର୍ଥନୈତିକ ବିକାଶର ବିଚାର ବୋଲି କୁହାଯାଇପାରେ ।

ଏକ ଶୋଷଣ ମୁକ୍ତ ଶ୍ରେଣୀବିହୀନ ନିର୍ଭୀକ ସମାଜ ଗଠନର ବୈଚାରିକ ପ୍ରକ୍ରିୟା ସୁପ୍ତ ହୋଇଛି । ତେଣୁ ଏହାକୁ ଜାଗ୍ରତ କରାଇବା ଉଦ୍ୟମ କରାଯାଇଛି । ଏହି ପ୍ରକ୍ରିୟାରେ ଆଚାର୍ଯ୍ୟ ଭାବାନନ୍ଦ, ଡକ୍ଟର ବନମାଳୀ ବାରିକ ଓ ପ୍ରାଧ୍ୟାପକ ସଂଘମିତ୍ରା ବେହେରା ଯୋଗଦେଇଛନ୍ତି । ଓଡ଼ିଶା ଭୂଦାନ କର୍ମଚାରୀ ସଂଘ ଏହି ବିଚାରକୁ ଯୁବ ସମାଜ ତଥା ତୃଣମୂଳ ସ୍ତରକୁ ନେବାପାଇଁ ସଂକଳ୍ପବଦ୍ଧ । 'ଗାନ୍ଧି, ବିନୋବା ବିଚାର ଆନ୍ଦୋଳନ'ର ପ୍ରଥମ ଅର୍ଘ୍ୟ ରୂପେ ଏହି ପୁସ୍ତକ ପ୍ରକାଶନ କରାଯାଇଛି । ଆଶା ପୁସ୍ତକଟି ପାଠକମାନଙ୍କର ବିଚାରଶୁଦ୍ଧିରେ ସହାୟକ ହେବ ।

ଗୌରାଙ୍ଗ ଚନ୍ଦ୍ର ମହାପାତ୍ର
ଭୂଦାନ କର୍ମୀ

ନଭେମ୍ବର ୧୫, ୨୦୧୦

## ବର୍ତ୍ତମାନର ଚିରନ୍ତନ ଗୁରୁତ୍ୱ

ସୃଷ୍ଟିର ଯେ ଆଦିନାହିଁ- ଏହା ସର୍ବବାଦୀ ସମ୍ମତ । ଏପରିକି ଯେଉଁ ପୃଥିବୀରେ ଆମେ ବସବାସ କରୁ, ତାହା ୨୦୦୦ ନିୟୁତ ବର୍ଷରୁ ପୁରୁଣା ନୁହେଁ । ଏହା ପ୍ରାଚୀନପନ୍ଥୀ ଓ ଆଧୁନିକପନ୍ଥୀ ପଣ୍ଡିତମାନଙ୍କର ମତ । ପ୍ରାରମ୍ଭରେ ପୃଥିବୀ ପୃଷ୍ଠରେ ଜୀବନର ସତ୍ତା ନଥିଲା । ଏହା ଥିଲା ସୂର୍ଯ୍ୟଭଳି ଏକ ଆଗ୍ନେୟ ପିଣ୍ଡୁଳା । ଆସ୍ତେ ଆସ୍ତେ ତାହା ଶୀତଳ ହେଲା । ଏହି ଅବସ୍ଥା ପାଇଁ କେତେ ନିୟୁତ ବର୍ଷ ଲାଗିଥିବ । ପରେ ପରେ ଏହି ଅଧିକ ଶିତଳ ପିଣ୍ଡ ଉପରେ ଜୀବନ ସଂଭବିଥିବ । କାଳକ୍ରମେ ମଣିଷର ଆବିର୍ଭାବ ହେଲା । ବୈଜ୍ଞାନିକମାନେ କହନ୍ତି- ମାନବ ଜୀବନର ପୂର୍ଣ୍ଣାବସ୍ଥିତି ଗୋଟିଏ ନିୟୁତ ବର୍ଷର ପୁରୁଣା । ମାନବୀୟ ସ୍ଥିତି ପାଇଁ ଶହେ ଦୁଇଶହ ବର୍ଷ ନୁହେଁ, ଆହୁରି ଦୀର୍ଘକାଳର ବ୍ୟବଧାନ ଲୋଡ଼ା । ତେବେ ବିଗତ ଶହେ କି ଦୁଇଶହ ବର୍ଷ ଆମ ପାଇଁ ବିଶେଷ ଗୁରୁତ୍ୱପୂର୍ଣ୍ଣ । ଏହି ଶହେ ବର୍ଷରୁ କିଛି ଅଧିକ ସମୟ ମାନବ ଇତିହାସ ପାଇଁ ଅନେକ ଚିନ୍ତନ ଓ ଦର୍ଶନର ସମୟ ।

ବର୍ତ୍ତମାନ ହିଁ ସବୁବେଳେ ବିଶେଷ ଗୁରୁତ୍ୱ ବହନ କରେ । କାରଣ ଆଜି ହେଉଛି କାଲିର ଫଳ ଏବଂ ଭବିଷ୍ୟତର ବୀଜ । ଯେଉଁ ଉପାୟରେ ଆମେ ଦେଖିବା ଏହାର ମହନୀୟତା ବୁଝି ପାରିବା । ଏହା ଅତୀତ ଓ ଭବିଷ୍ୟତର ମିଳନ ସ୍ଥଳ ହୋଇଥିବାରୁ ସ୍ୱାଭାବିକ ଭାବେ ପରିବର୍ତ୍ତନର କାଳ, ବିପ୍ଳବର କାଳ- ଫଳ ଭଲ ହୋଇପାରେ, ଖରାପ ହେଲେ ହେବ ବିଭାଜନ ଓ ମୃତ୍ୟୁ । କେବଳ ସେତିକି ନୁହେଁ, ଏହା ସର୍ବୋତଭାବେ ଅସାଧାରଣ (Unique) । କାରଣ ଏପରି ଅବସ୍ଥା ଆଗରୁ ନଥିଲା କିମ୍ବା ପରେ ଆସିବ । କଂଗ୍ରେସକୁ ଉଦାହରଣ ରୂପେ ନିଆଯାଉ । ବିଗତ ଷାଠିଏ ବର୍ଷ ଧରି ଏହାର ବାର୍ଷିକ ଅଧିବେଶନ ପ୍ରାୟତଃ ହୋଇ ଆସୁଛି । ପ୍ରତ୍ୟେକ ଅଧିବେଶନ ହୋଇଛି ଅଭୂତପୂର୍ବ ଏବଂ ଅବିସ୍ମରଣୀୟ । ନୁହେଁ କି ? ଘରୋଇ ଉଦାହରଣଟିଏ ଦେଉଛି- ଯେତେବେଳେ ମା'ଟାର ନୂଆ ପିଲାଟିକୁ ଦେଖେ, ସେ କ'ଣ ଅନୁଭବ କରେ ନାହିଁ ଯେ ଆଉ କେହି ଏପରି ପିଲାଟିଏ ମୁହଁ ଦେଖିନାହିଁ ? ମୋତେ ଅନେକ ଲୋକ ପଚାରିଛନ୍ତି- ପିଲାର ନାଁ କ'ଣ ଦିଆଯିବ, ଏପରି ନାଁ ଦିଅ- ଯାହା ପୂର୍ବରୁ ଦିଆଯାଇ ନଥିବ ।

ସଂକ୍ଷେପରେ ମୁଁ କହିବି- ବର୍ତ୍ତମାନର ସମୟ, ଏକ ବିପ୍ଳବର ସମୟ । ଖାଲି ସେତିକି ନୁହେଁ ଏହା ମହାବିପ୍ଳବର ସମୟ । ସେଦିନ ଜଣେ ବନ୍ଧୁ ମୋତେ କହିଲେ- 'ଆମେ ଆଜି ସେଇ ପୁରୁଣା ମନ୍ତ୍ର - ଶାନ୍ତି, ଶାନ୍ତି, ଶାନ୍ତି ଚାହୁଁନା । ଆମେ ବର୍ତ୍ତମାନ ସେଇ ପୁରୁଣା ବଜ୍ର ଶପଥ ଚାହୁଁଛୁ- କ୍ରାନ୍ତି, କ୍ରାନ୍ତି, କ୍ରାନ୍ତି ।' ମୁଁ କହିଲି- 'ତମେ ଯଦି ଥରେ କ୍ରାନ୍ତି ବୋଲି କୁହ, ନିଶ୍ଚୟ ଭଲ ହେବ । ତମେ ଯଦି ଏପରି ତିନିଥର କର, ଏହା ତୁମକୁ ବର୍ତ୍ତମାନ ସ୍ଥାନରୁ ବହୁ ପଛକୁ ଠେଲି ନେଇଯିବ । କେବଳ ଶାନ୍ତିରେ କୌଣସି ବିପଦ ନାହିଁ । ଏହା ମଧ୍ୟ ଚିରନ୍ତନ ପୁରୁଣା । କିନ୍ତୁ କ୍ରାନ୍ତି ସମୟ କ୍ରମେ ଦନ୍ତୁରା ହୋଇ ଯାଇଛି । ତେଣୁ କ୍ରାନ୍ତିର ତ୍ରିବାର ଉଚ୍ଚାରଣ ଦରକାର ନାହିଁ । ଥରେ ତାକୁ କୁହ ଏବଂ ସେହିପରି କର ।'

ବିଗତ ଅତୀତ କିପରି ବର୍ତ୍ତମାନଠାରୁ ଗୁରୁତ୍ୱପୂର୍ଣ୍ଣ ହୋଇପାରିବ ? ସେଦିନର ବର୍ତ୍ତମାନ ଥିଲା ସେତେବେଳେ ମଧ୍ୟାହ୍ନ । ଥିଲା ଅତି ଗୁରୁତ୍ୱପୂର୍ଣ୍ଣ । ସେଇଟା ଗୋଟିଏ ଅଲଗା ସମୟ । ତା'ଛଡ଼ା ବର୍ତ୍ତମାନର ସ୍ୱାଭାବିକ ପ୍ରାଧାନ୍ୟ ଯଦି ଅଶେଷ ନିର୍ଯ୍ୟାତନାରେ ଭରିଯାଏ, ତା'ହେଲେ ତାର ମୂଲ୍ୟ ଓ ଗୁରୁତ୍ୱ ହୁଏ ଅକଳନୀୟ । ନିର୍ଯ୍ୟାତନାର ସମୟ ସବୁବେଳେ ଦୀର୍ଘ । ଗୋଟିଏ ଦୁଃଖଦ ଘଟଣା ବେଳେବେଳେ ବହୁ ସୁଖଦ ଦିନକୁ ନଷ୍ଟ କରିଦିଏ ଏବଂ ତାର ଗୁରୁତ୍ୱ ସମସ୍ତଙ୍କ ସମ୍ମୁଖରେ ନାଚିଯାଏ । ଜୀବନରେ ଖୁସିର ମୁହୂର୍ତ୍ତ ସବୁ ସହଜରେ ହଜିଯାଏ । କିନ୍ତୁ ଦୁଃଖ ବଂଚିରହେ । ମାତ୍ର ବିରାଟ ଦୁଃଖର ଆହ୍ୱାନରେ ତାହା ଲୁଚିଯାଏ । ସୁଖର ସମୟ ଦୁଃଖର ସ୍ମୃତିକୁ ଭୁଲାଇ ଦେଇପାରେ ନାହିଁ । ପକ୍ଷାନ୍ତରେ ସୁଖ ବେଳେବେଳେ ଅତୀତର ଦୁଃଖମୟ ମୁହୂର୍ତ୍ତସବୁକୁ ଗୋଟିଗୋଟି ମନେ ପକାଇଦିଏ । ଅତୀତ ଗଭୀର ଦୁଃଖ ବେଳେବେଳେ ଛୋଟଛୋଟ ଦୁଃଖଦ ଘଟଣାକୁ ପୋଛି ପକାଏ । ଅତୀତର ଶହେ ବା ଦେଢ଼ଶହ ବର୍ଷକୁ ନେଇ ଗଢ଼ାହୁଏ ଆମର ବର୍ତ୍ତମାନ । ଏଇ ବର୍ତ୍ତମାନ ଯେତେବେଳେ ଯନ୍ତ୍ରଣାର ଝଡ଼ଝଞ୍ଜାରେ କବଳିତ ହୁଏ, ସେତେବେଳେ ଆମ ପାଇଁ ସମଗ୍ର ମାନବ ଜାତିର ଇତିହାସ ଅନ୍ଧକାରାଚ୍ଛନ୍ନ ହୋଇଯାଏ ।

## ଜେଲ୍ ପାଠଶାଳା

ଆମର ବର୍ତ୍ତମାନକୁ ଯଦି ଦୁଃଖ ଓ ଯନ୍ତ୍ରଣାରେ କାଳ ବୋଲି ଧରାଯିବ, ତେବେ ଏହାକୁ କିଭଳି ଚିହ୍ନିତ କରାଯିବ ? ଉପରଠାଉରିଆ ଭାବରେ ଦେଖିଲେ ଏପରି ଅବସ୍ଥାକୁ କିଛି ବି କୁହାଯାଇ ପାରିବ ନାହିଁ । ଏକଥା ସତ ଯେ ଏବେ ଜୀବନର ସୁଖ ସୁବିଧା କ୍ଷେତ୍ରରେ ପ୍ରଭୂତ ଉନ୍ନତି ସାଧିତ ହୋଇଛି । ଭୋଗ ଦ୍ରବ୍ୟର ଉତ୍ପାଦନ ବହୁ ପରିମାଣରେ ବଢ଼ିଛି । କିନ୍ତୁ ଟିକିଏ ତଳେଇ ଦେଖିଲେ ଜାଣିହେବ ଏତେ ସବୁ ସୁଖ ସୁବିଧାର କାରଣ ହୋଇଛି ଅକଥନୀୟ ଯନ୍ତ୍ରଣା । ସୁଖ ଓ ଯନ୍ତ୍ରଣା ବେଳେବେଳେ ପରସ୍ପର ବିପରୀତ ବୋଲି କୁହାଯାଇଛି । ମାତ୍ର ଏହା ପରସ୍ପରର ଜନକ ରୂପେ ଛିଡ଼ା ହୋଇଛନ୍ତି । ସୁଖ ଡାକି ଆଣୁଛି ଦୁଃଖ, ଆଉ ଦୁଃଖ ଡାକି ଆଣୁଛି ସୁଖ । ସୁତରାଂ ବର୍ତ୍ତମାନ ଆମେ ଯେତେବେଳେ କେବଳ ଦୁଃଖର ଜନ୍ମ ଉତ୍ସବ ପାଳନ କରୁଛୁ, ସେତେବେଳେ ସୁଖକୁ ନିମନ୍ତ୍ରଣ କରୁଛୁ । ତା'ହେଲେ କ'ଣ ଆଜିର ଅଜସ୍ର ଅସୁବିଧା ଓ ବାଧାକୁ ଆମେ ସୁଖ ବୋଲି କହିବା ? ବୁଝିଲେ ଏହା ଏକ ଜଟିଳ ସମସ୍ୟା ନିଶ୍ଚୟ । ଦୁଃଖ ସେଇ ବ୍ୟାଧିରୁ ମୁକ୍ତ । ଯଦି ଚାହିଁ, ଯେ କେହି ସମଗ୍ର ଭାବରେ ଏହାକୁ ଗ୍ରାସ କରିପାରେ । ଏହା ଅନ୍ୟର ଈର୍ଷା ଉଦ୍ରେକ ନକରି ପାରେ । ଜଣେ ବିରଳ ମହାତ୍ମା ବା ଜଣେ ପ୍ରଥମ ଶ୍ରେଣୀର ବୋକା ଏଥିରେ ଅଂଶଗ୍ରହଣ କରିପାରେ । କିନ୍ତୁ ଗୀତାର ଭାଷାରେ – 'ଏପରି ମହାତ୍ମା ସାଧାରଣତଃ ବିରଳ' ଏଭଳି ଧାରଣାକୁ ମଧ୍ୟ ଅଗ୍ରାହ୍ୟ କରାଯାଇପାରେ ।

ଆମର ଯୁଗ ଆମ ପାଇଁ ଅପର୍ଯ୍ୟାପ୍ତ ସୁଖ ସୁବିଧା ଆଣିଦେଇଛି । ତାହାର ଭାରାରେ ଗଣ ମାନସିକତା ପେଷି ଚୁରମାର ହୋଇଯାଉଛି । ଶଗଡ଼ ପିଠିରେ ଶହଶହ ବସ୍ତା ଚିନି ବୁହା

ହୋଇଯାଉଛି । ଲୋକମାନେ ତାହା ଭୋଗ କରୁଛନ୍ତି । ସେମାନଙ୍କର ରୋଗ ବଢ଼ୁଛି । କଲିଜା ଖରାପ ହେଉଛି । ଏଣେ ବଳଦଙ୍କର ପିଠି ବଙ୍କା ହେଉଛି । ଏହା ହିଁ ଚିନିର କରାମତି । କିନ୍ତୁ ଆମେ ଜାଣୁ ଚିନି ଭାରି ମିଠା । ସୁଖରେ ଭାଗୀ ହେବାପାଇଁ ଜଣେ ପାଏ ସିଂହର ଭାଗ । ଆଉ ଜଣେ ପାଏ ଶୃଗାଳର ଭାଗ । ଗରିବ ମେଣ୍ଢା ଛୁଆ ପାଇଁ କିଛି ରହେ ନାହିଁ । ଅଥଚ ତାକୁ ସିଂହ ଓ ଶୃଗାଳ ବାଣ୍ଟି ଖାଆନ୍ତି । ଏହାହିଁ ଏ ଯୁଗର କାହାଣୀ । ଆଖିରୁ ଲୁହ ଝରାଉଥିବା ଅଗଣିତ ହତଭାଗ୍ୟ ମଣିଷଙ୍କର କାହାଣୀ ସମସ୍ୟା ହେଉଛି, ଆମେ କିପରି ଏହି ଝାମେଲାରୁ ମୁକ୍ତି ପାଇବା । ବର୍ତ୍ତମାନ ପୃଥିବୀର ଚିନ୍ତନ, ବିଦ୍ରୋହ, ସଂତ୍ରାସ- ସବୁ ସେଇ ଆଡ଼କୁ ମୁହାଁଇଛି ।

୧ ୯ ୩ ୨ ବେଳେ ଭାରତର ଜେଲ ସବୁ ବନ୍ଦୀ- ସତ୍ୟାଗ୍ରହୀମାନଙ୍କ ଦ୍ୱାରା ଭରିଯାଇଥିଲା । ଦସ୍ୟୁ ବାରାବ୍ବାସର ମୁକ୍ତି ଏବଂ ତା ସ୍ଥାନରେ ଯୀଶୁଙ୍କୁ କ୍ରୁଶବିଦ୍ଧ କରିବା ପାଇଁ ହଜାର ହଜାର ଉତ୍ୟକ୍ତ ଲୋକଙ୍କ ଦାବି ଆମେ ବାଇବେଲରୁ ପଢ଼ିଛୁ । ସେଇଭଳି ଭାବରେ ସେତେବେଳର ସରକାର ବନ୍ଦୀମାନଙ୍କୁ ଖଲାସ କରିଦେଇ ସେମାନଙ୍କ ସ୍ଥାନରେ ସତ୍ୟାଗ୍ରହୀମାନଙ୍କୁ ଅଟକାଇ ଥିଲେ । ଭଗବାନ ଜାଣନ୍ତି – କ'ଣ ସବୁ ଘଟୁଥିଲା । ସୁଧାର ଗୃହ ନାମରେ ଜେଲ୍ ସବୁ ସଂଖ୍ୟାଧିକ ବନ୍ଦୀମାନଙ୍କ ଗହଣରେ ଉଛୁଳି ଉଠୁଥିଲା । ଅନେକ ଜ୍ୟୋତିଷ ବିଦ୍ୟା ଅଧ୍ୟୟନରେ ଲାଗି ପଡ଼ିଲେ ଏବଂ ବାରମ୍ବାର ସର୍ବମୁକ୍ତିର ଭବିଷ୍ୟବାଣୀ ଶୁଣାଉଥିଲେ । ସବୁ ଗଣିତ ଫେଲ୍ ମାରୁଥିଲା । ତଥାପି ସେମାନେ ହତାଶ ନହୋଇ ଅଧିକ ମନଯୋଗ ସହ ବିଦ୍ୟା ଚର୍ଚ୍ଚାରେ ଲାଗିଥିଲେ । ବାହାରକୁ ହତାଶାର ବାଣୀ ନଶୁଣାଇଲେ ମଧ ତାହା ଭିତରେ ଲୁଚି ରହି ନଥିଲା । ଇତିହାସରୁ ଆମେ 'ଶହେ ବର୍ଷ ଯୁଦ୍ଧ'ର ବିଷୟ ପଢ଼ିଛୁ । କିନ୍ତୁ ଆମର ଧୈର୍ଯ୍ୟଚ୍ୟୁତି ଘଟିବାକୁ ଆରମ୍ଭ ହୋଇସାରିଥିଲା । ମାସ ପରେ ମାସ ବିତିବା – ଆମକୁ ବୋଝପରି ଲାଗୁଥିଲା । ପକ୍ଷାନ୍ତରେ ଆମେ କେତେଜଣ ଧାର୍ମିକ ରୀତି, ନୀତି ଓ ପୂଜାପାଠରେ ଲାଗିଥିଲୁ । କେହିକେହି ରୋଷେଇରେ ପରୀକ୍ଷା ନିରୀକ୍ଷା କଲୁ । କେହିକେହି ବୁଣାଇ କାର୍ଯ୍ୟରେ ମନଦେଲୁ । ଅନ୍ୟମାନେ ନିଜ ନିଜର ରୁଚି ଓ ପେଷା ଅନୁସାରେ ନିଜକୁ ନିୟୋଜିତ କଲେ । ଏହା ସତ୍ତ୍ୱେ ସମସ୍ତେ ନିଯୁକ୍ତ ହୋଇ ପାରିଲେ ନାହିଁ । ଶେଷକୁ କେତେକ ଆଳସ୍ୟରେ ଦିନ କାଟିଲେ, କୌଣସି କାମ ମିଳିଲା ନାହିଁ । ଏସବୁ ବୁଦ୍ଧଙ୍କର ସତ୍ୟପ୍ରତି ନିଷ୍ଠାର ବାଣୀ ସ୍ମରଣ କରାଇଦେଲା । ନିଶ୍ଚିତ ସମାଧାନର ପନ୍ଥା କ'ଣ ? ଏଇ ଦିଗରେ ଚର୍ଚ୍ଚା ମଧ ହେଲା । କାହିଁକି ଭାରତ ଓ ସାରା ବିଶ୍ୱ ଏତେ ସବୁ ଦୁଃଖ ଭୋଗୁଛି ? ଏଥିପାଇଁ କ'ଣ ବା ଔଷଧ ଅଛି ?

ଯେଉଁମାନେ ବିଶ୍ୱାସ କରୁଥିଲେ ଯେ ଗାନ୍ଧିଙ୍କ ମାର୍ଗରେ ହିଁ ସବୁ ସମ୍ଭବ, ସେମାନେ ଆତ୍ମସମୀକ୍ଷଣ ଓ ଆତ୍ମଶୁଦ୍ଧିକରଣ ଉପରେ ଗୁରୁତ୍ୱ ଦେଇଥିଲେ । ସେମାନେ ନିଜକୁ ନିଜେ କହୁଥିଲେ – 'ଏହାହିଁ ଅସଲ ପନ୍ଥା । ସଫଳତା ନମିଳିବାର କାରଣ ଆମର ବାଟ ଠିକ୍ ନାହିଁ । ଆମର ପାଦ ଏଣେତେଣେ ପଡୁଛି । ହେଇ ଦେଖ- ଆମେ କିପରି ସନ୍ଦେହଜନକ

ବାର୍ତ୍ତା ପ୍ରେରଣ କରୁଛୁ ? ଦେଖ, ଆମେ ଏଠାକୁ ସତ୍ୟାଗ୍ରହୀ ହୋଇ ଆସିଛୁ । କିନ୍ତୁ ଜେଲ୍ କର୍ତ୍ତୃପକ୍ଷ ଯାହା ବାରଣ କରୁଛନ୍ତି, ଆମେ ଠିକ୍ ସେଇସବୁ ଜିନିଷ ଆଣୁଛୁ । ଆମେ ଭାବୁଛୁ- ସେଗୁଡ଼ା ଆମର ଦରକାର । ଏହିପରି ଆମେ ସତ୍ୟ ପାଳୁଛୁ । ଆମର ଆଗ୍ରହ ସଂପର୍କରେ କ'ଣ ଆଉ କହିବା ? ମାତ୍ର କେଇଟା ମାସର କାରାବାସ ଆମକୁ ଫାଶି ଦଣ୍ଡ ଭଳି ଲାଗୁଛି । ଏହିଭଳି ଭାବେ ଆମେ ସତ୍ୟାଗ୍ରହୀମାନେ ନିଜକୁ ତିଆରି କରୁଛୁ । ଏପରି ଦୁର୍ବଳ ଚରିତ୍ର ନେଇ ଆମେ କି ସଫଳତା ପାଇ ପାରିବା ? ତେଣୁ, ଚାଲ, ଏଇ କାରାବାସ ଓ ନିର୍ଜନତାକୁ ଆମେ ଭଗବାନଙ୍କର ଦାନ ବୋଲି ଗ୍ରହଣ କରିନେବା ଏବଂ ଚରିତ୍ର ନିର୍ମାଣରେ ଲଗାଇଦେବା ।' ଏହିଭଳି ପବିତ୍ର ବିଚାରକୁ ଆଧାର କରି ସେମାନେ ଶୃଙ୍ଖଳା ଓ ଆତ୍ମନିଗ୍ରହର ସାଧନାରେ ସମୟ ଅତିବାହିତ କଲେ । ଜେଲର ସମସ୍ତ କାର୍ଯ୍ୟ ସାରିଲେ । ତା'ପରେ ସୂତାକାଟିବା, ଲୁଗାବୁଣିବା ଏବଂ ମଇଳା ସଫା କରିବା ଭଳି କାର୍ଯ୍ୟରେ ନିଯୁକ୍ତ ହେଲେ । କିନ୍ତୁ କେତେଜଣ ଏପରି ଆତ୍ମସଂଧାନ ଭାବନାକୁ ସମର୍ଥନ କଲେନାହିଁ । ସେମାନେ ଯୁକ୍ତି କଲେ - ତୁମେ ଜୋର ଦେଇ କହିଲ, ନିଷ୍ଠାର ସହ ସତ୍ୟ ଓ ଅହିଂସା ପାଳନକର । ଗୋଟିଏ ରାଜନୀତିକ ଯୁଦ୍ଧରେ ଏହାର ମୂଲ୍ୟ କେତେ ? ଇତିହାସର ଅସଂଖ୍ୟ ଯୁଦ୍ଧରେ ଲୋକମାନେ ଲଢ଼ିଛନ୍ତି । କିନ୍ତୁ ଯେଉଁଠି ସେମାନେ ଏପରି କଠିନ ଶୃଙ୍ଖଳା ଓ ଆତ୍ମନିଗ୍ରହ ପ୍ରଦର୍ଶନ କରିଛନ୍ତି ? ଯଦି ସତ୍ୟାଗ୍ରହ- ସଂଗ୍ରାମର ସୁଫଳ ମିଳିବ, ତେବେ ସାଧାରଣ ଲୋକଙ୍କ ପ୍ରକୃତିର ପରିବର୍ତ୍ତନ ଆବଶ୍ୟକ । ଏହି ସଫଳତାକୁ ଗୋଟିଏ ମୃଗତୃଷ୍ଣା ବୋଲି କହିବାକୁ ହେବ । ଏହା ସାଧାରଣ ମଣିଷର ଅବବୋଧର ବାହାରେ । ତାହାହେଲେ ଉଚ୍ଚ ଚରିତ୍ରର ଷ୍ଟାଣ୍ଡାର୍ଡ଼ କ'ଣ ? ଯାହା ସାଧାରଣ ଲୋକଙ୍କ ସମ୍ମୁଖରେ ରଖାଯାଇପାରିବ । ଆତ୍ମନିଗ୍ରହ ଓ ଶୃଙ୍ଖଳା ପାଳନର ସ୍ୱରୂପ କ'ଣ ଏବଂ ଏହା କେତେକାଳ ? ଦୁଷ୍ଟ ବ୍ୟକ୍ତି (ଶାସକ)ର ହୃଦୟ ପରିବର୍ତ୍ତନ କ'ଣ ସମ୍ଭବ ଏବଂ ଲୋକଙ୍କ ଯନ୍ତ୍ରଣାର ପରିସମାପ୍ତି କେବେ ? ଏହାର ସମାଧାନ କ'ଣ ନିକଟ ଭବିଷ୍ୟତରେ ହୋଇପାରିବ ? ଗାନ୍ଧିଜୀଙ୍କ ବାଟ ଆମେ ଗ୍ରହଣ କରିନେଲୁ, କାରଣ ଆମ ଆଗରେ ଆଉ କିଛି ଉପାୟ ନଥିଲା । ଗ୍ରହଣ କରିନେଲୁ ଯେ ଏହା ହିଁ ଉତ୍ତମ ଓ ତ୍ରୁଟିହୀନ ବାଟ । କିନ୍ତୁ ଦୀର୍ଘକାଳ ଅପେକ୍ଷା ପରେ ଏହା ଆମକୁ ଯଦି ଲକ୍ଷ୍ୟ ସ୍ଥଳରେ ପହଞ୍ଚାଇ ନ ଦିଏ ?

ଅନ୍ୟ ପକ୍ଷରେ ରୁଷିଆକୁ ଦେଖ । ଆଖି ପିଛୁଳାକେ ସେମାନେ କି ପ୍ରକାର ବିରାଟ ବିପ୍ଳବ ନକଲେ ? ସେମାନେ ଦେଶର ପରିଚୟ ବଦଳାଇ ଦେଲେ ଏବଂ ସାରା ବିଶ୍ୱରେ ପରିବର୍ତ୍ତନର ବୀଜ ବୁଣିଦେଲେ । କିନ୍ତୁ ଆମେ ଜେଲର ନିୟମମାନି ଏଠି ବନ୍ଦୀ ଜୀବନ ଅତିବାହିତ କରୁଛୁ । ସତ୍ୟ ଓ ଅହିଂସାର ଶୃଙ୍ଖଳା ଭିତରେ ଆମେ ପଡ଼ି ରହିଛୁ । ତମେ ଆମକୁ ଆଉ କେଇ ମାସ ଜେଲ୍ ଜୀବନ ସହିନେବାକୁ ବୁଝାଇ ଚାଲିଛ । ମାତ୍ର ସାରା ଦେଶର ସମଗ୍ର କର୍ମୀ ସମାଜକୁ ସମ୍ଭାଳିବା ସାମାନ୍ୟ କଥା ନୁହେଁ । ହଁ, ଆନ୍ଦୋଳନ ଯଦି

ବାହାରେ ଜୋରସୋର ଚାଲିଥାନ୍ତା, ତା'ହେଲେ ଭିନ୍ନ କଥା ହୋଇଥାନ୍ତା । କିନ୍ତୁ ବର୍ତ୍ତମାନ ବାହାରେ ସବୁ ଶାନ୍ତ । ଆମେ କେତେଜଣ ଆତ୍ମନିୟନ୍ତ୍ରଣର ସଂହିତା ଭିତରେ କାମ କରୁଛୁ । ତମେ କ'ଣ ଆଶା କରୁଛ ଯେ ବାହାରେ ଆନ୍ଦୋଳନ ହେବ ଓ ଭିତରେ ଆତ୍ମ-ଉନ୍ନତି ଚାଲିଥିବ । ଏପରି ଅବସ୍ଥାରେ ଆମକୁ ସ୍ୱରାଜ ମିଳିଯିବ ? ତେଣୁ ଚାଲ, ଏପରି ଆତ୍ମନିୟନ୍ତ୍ରଣ କରି ପରାଜୟ ଭୋଗିବା ଅପେକ୍ଷା ଆଉ କିଛି ଠିକ୍ ବାଟ ଖୋଜିବା । ଆମର ଆତ୍ମାରେ କୌଣସି ତ୍ରୁଟି ନାହିଁ । ତାହା ଯେପରି ଥିଲା ଠିକ୍ ସେହିପରି ଅଛି ।' ଏପରି ପ୍ରତିବାଦ କରିବା ସହିତ ସେମାନେ ସାମ୍ୟବାଦୀ ଓ ସମାଜବାଦୀ ସାହିତ୍ୟ ଅଧ୍ୟୟନରେ ମନ ବଳାଇଥିଲେ । କୁହାଯାଇଚି ଯେ ମହାପ୍ରଳୟରେ ଯେତେବେଳେ ସମଗ୍ର ସ୍ଥଳଭାଗ ଜଳରେ ବୁଡ଼ିଯାଏ, ସେତେବେଳେ ସୀମାହୀନ ସମୁଦ୍ରରେ ଏକାକୀ ଋଷି ମାର୍କଣ୍ଡେୟ ଭାସୁଥାନ୍ତି । ଆଜିର ଏପରି ପରିସ୍ଥିତିରେ ଆମର ଯୁବକମାନେ ଋଷି ମାର୍କଣ୍ଡେୟଙ୍କ ପରି ସାମ୍ୟବାଦୀ ସମୁଦ୍ରରେ ପହଁଚୁଛନ୍ତି ।

ପ୍ରକୃତରେ ଏହି ସାହିତ୍ୟ- କେତେକ ସ୍ଥଳରେ ଖୁବ୍ ଗଭୀର ଓ କେତେକ ସ୍ଥଳରେ ବେଳାଭୂମି-ବିହୀନ ସାଗର ପରି ଅଗଭୀର । କେତେଜଣ ମାର୍କ୍ସଙ୍କ 'କ୍ୟାପିଟାଲ'ର ଗଭୀରତା ମାପିବାକୁ ପ୍ରୟାସ ଆରମ୍ଭ କରିଛନ୍ତି । କିନ୍ତୁ ଅନେକ ଲୋକ ରୁଷିଆର ପ୍ରଚାରଧର୍ମୀ ସାହିତ୍ୟରେ ବୁଡ଼ିବାକୁ ଯାଇ ଜଳରେ ପ୍ରବେଶ କରିଛନ୍ତି । ପୁରାଣ ଯୁଗରୁ ସାମ୍ୟବାଦୀମାନଙ୍କର ଏପରି ପ୍ରଚାର ପାଇଁ ଅଧିକ ଆଗ୍ରହ ଦେଖିବାକୁ ମିଳେ । ପୁଣି ସେଥିରେ ରହିଛି ପୁନରାବୃତ୍ତି ପ୍ରତି ଘୋର ବେଖାତିର । ପୁରାଣର ଋଷି ଓ ଆଧୁନିକ ଋଷିୟମାନେ ବିଶ୍ୱାସ କରନ୍ତି ଯେ ଜଣେ ଶ୍ରୋତା ଯେତେ ଭୁଲାମଣିଷ ହେଲେ ବି ତାର ମନରେ କିଛି ହେଲେ ଛାପ ପକାଇବ । ପୁରାଣର ପାଠକମାନେ ବିଶ୍ୱାସ କରନ୍ତି ଯେ ଏଇ ପୃଥିବୀ ବାହାରେ ସ୍ୱର୍ଗ ରହିଛି । ସେମାନେ ଏଥିରୁ ଗଲାପରେ ସେଠାରେ ରହିବେ । ଆମର ଯୁବବଂଧୁମାନେ ଜେଲ୍‌ରେ ଥାଇ ସେଇ ବିପୁଳ ସମାଜବାଦୀ ସାହିତ୍ୟକୁ ଆଧାର କରି ବିଶ୍ୱାସ କରନ୍ତି ଯେ ରୁଷିଆକୁ ବର୍ତ୍ତମାନ ସ୍ୱର୍ଗ ଓହ୍ଲାଇ ଆସିଲାଣି ।

୧୯୪୦ ମସିହାରେ 'ବ୍ୟକ୍ତିଗତ ସଭ୍ୟ ପ୍ରତିରୋଧ' ଆନ୍ଦୋଳନ ସଂପର୍କିତ କାରାବାସ ବେଳେ ଜଣେ ସାମ୍ୟବାଦୀ ବନ୍ଧୁ ମୋତେ କେତେକ ସାମ୍ୟବାଦୀ ସାହିତ୍ୟ ପଢ଼ିବାକୁ ଉପଦେଶ ଦେଲେ । ମୁଁ ତାଙ୍କୁ ବିଶ୍ରାମ ବେଳେ ପଢ଼ି ଶୁଣାଇବା ପାଇଁ ଅନୁରୋଧ କଲି । ସେ ରାଜି ହୋଇଗଲେ ଓ ପ୍ରତିଦିନ ଗୋଟିଏ ଘଣ୍ଟା କେତେକ ନିର୍ବାଚିତ ମାର୍କ୍ସୀୟ ପ୍ରଯୋଗ ପଢ଼ି ଶୁଣାଇଲେ । କେତେବର୍ଷ ପୂର୍ବରୁ ମାର୍କ୍ସଙ୍କ 'କ୍ୟାପିଟାଲ' ପଢ଼ିଥିଲି । ତେଣୁ ତାଙ୍କର ପାଠ ବିଷୟ ମୋତେ ବୁଝିବା ପାଇଁ ଅସୁବିଧା ହେଲାନାହିଁ । ଏହିପରି କେତୋଟି ମାସ ବିତିଗଲା । ସେ ସବୁ ଥିଲା ନିର୍ବାଚିତ ବିଷୟ । ତଥାପି ମୋତେ ଲାଗିଲା, ସେଥିରେ ଅନେକ ପୁନରାବୃତ୍ତି । ମୋର ଧାରଣା ହେଲା- ଆମର ଯୁବ ମାନସ ବିରକ୍ତିଭାବ ପ୍ରଦର୍ଶନ କରିବା ପରିବର୍ତ୍ତେ ସାମ୍ୟବାଦୀ ଭାବନାରେ ବିଶେଷଭାବେ ଭାରାଗ୍ରସ୍ତ ହୋଇଯାଇଛି । ପୁନରାବୃତ୍ତି ଯୋଗୁଁ ଏପରି ହୋଇଥାଏ । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

## ଦୁଇଟି ମୌଳିକ ଗୋଷ୍ଠୀ ବିଶ୍ୱାସ (Two Fundamental Creeds):

ପୁଣ୍ୟର ବିକାଶ ଓ ଏକ ସାମାଜିକ ଶୃଙ୍ଖଳା ପ୍ରତିଷ୍ଠା ଦୁଇଟି କଠୋର ଓ ମୌଳିକ ଗୋଷ୍ଠୀ ବିଶ୍ୱାସ ଉପରେ ଆଧାରିତ । ଏହା ମଣିଷର ମନକୁ ସମୟର ପ୍ରାରମ୍ଭରୁ କବଳିତ କରି ରଖିଛି । ତାକୁ ତାର ଲକ୍ଷ୍ୟ ଓ ଶେଷ ଗତି ସ୍ଥିର କରିବାରେ ଏହି ବିଶ୍ୱାସ ସାହାଯ୍ୟ କରିଥାଏ । ପ୍ରଥମ ମତବାଦର ପ୍ରବକ୍ତାମାନେ ବିଚାର କରନ୍ତି ଯେ ଜୀବନ ଓ ସମାଜର ମଙ୍ଗଳ ମଣିଷର ଚରିତ୍ର ଓ ତାର ନୈଷ୍ଠିକଗୁଁଣ ଉପରେ ନିର୍ଭର କରେ । ତା'ଛଡ଼ା ସେ ନିଜର ଉନ୍ନତି ପଥରେ ବିଶ୍ୱାସ ରଖିବା ଆବଶ୍ୟକ । ଜଣେ ବ୍ୟକ୍ତିର ଜୀବନ ତାର ନୈତିକ ପ୍ରକୃତିର ଶକ୍ତି ବଳରେ ଆଗେଇ ଚାଲେ । ସାମାଜିକ ସଂଗଠନ ତାର ରୂପ ବଦଳାଇ ଦିଏ ଏବଂ ଚରିତ୍ରର ବିକାଶ ସାଧନ କରେ । ସୁତରାଂ 'ସୁ'ର ଉପାସକମାନେ ସେମାନଙ୍କର ଅଭିନିବେଶ ନୈତିକଗୁଣର ବିକାଶ ଉପରେ କେନ୍ଦ୍ରୀତ କରିବା ଆବଶ୍ୟକ । ସମାଜ ଗଢ଼ିବା ପାଇଁ କୌଣସି କଠିନ ଶ୍ରମ ଭଲ ଫଳ ଦିଏ ନାହିଁ । ଏହା କେବଳ ଅହଂର ଅଭିବୃଦ୍ଧି ସାଧନ କରେ । (ଜଗଦ୍ ବ୍ୟାପାର ପରାବର୍ଜମ୍) ଏହା ବେଦାନ୍ତର ଗୋଟିଏ ପ୍ରବାଦ ବାକ୍ୟ । ଜଣେ ଭକ୍ତର ଉପରକୁ ଉଠିବାର ସୀମା ଏଥିରେ ସୂଚିତ । ଆମର କାମ ହେଲା- ଆଧାତ୍ମିକ ଓ ନୈତିକ ଶୃଙ୍ଖଳାକୁ ଶକ୍ତିଶାଳୀ କରିବା । ସେଗୁଡ଼ିକ ହେଉଛି- ଅହିଂସା, ସତ୍ୟ, ଆତ୍ମସଂଯମ, ସନ୍ତୋଷ, ସହଯୋଗ ଇତ୍ୟାଦି । ଆମର ଦୈନନ୍ଦିନ ଜୀବନରେ ଏସବୁ ପାଳନ ପାଇଁ ଚେଷ୍ଟା କରିବା । ଚାଲ, ଆମେ ଏହା ହିଁ କରିବା । ଆଉ କିଛି ଅଧିକ ଏଥିସହ ସଂଯୋଗ କରିବା । କୌଣସି ମା' ତାର ପିଲାକୁ କିପରି କ୍ଷୀର ଖୁଆଇବ ତାହା ବୁଝାଇବା ଦରକାର ନାହିଁ । ପିଲାଟିଏ ଯେ ଆଘାତ ପାଇଲେ କାନ୍ଦିବ ତାହା କହିବା ମଧ ଦରକାର ନାହିଁ । ପିତାମାତାର ସ୍ନେହ ବଳରେ ପିଲାଟି କ୍ଷୀର ଖାଇବ ଓ ଆଘାତ ପାଇଲେ କାନ୍ଦିବ ।

ଏହି ଗୋଷ୍ଠୀ ବିଶ୍ୱାସ ଦେବୋପମ ବ୍ୟକ୍ତିମାନଙ୍କ ହୃଦୟରେ ଆପେ ଆପେ ପ୍ରକଟିତ ହୁଏ । ଗୀତାରେ ନୈତିକ ଗୁଣଗୁଡ଼ିକର ଏକ ଦୀର୍ଘ ତାଲିକା ଦିଆଯାଇଛି ଏବଂ ଜ୍ଞାନର ଚାରିତ୍ରିକ ବୈଶିଷ୍ଟ୍ୟ ସମୂହର ଉଲ୍ଲେଖ ଅଛି । ଜ୍ଞାନଦେବ ତାଙ୍କର ପାଣ୍ଡିତ୍ୟପୂର୍ଣ୍ଣ ଭାଷାରେ ଏସବୁର ସୁନ୍ଦର ବ୍ୟାଖ୍ୟା କରିଛନ୍ତି । ସାମ୍ୟବାଦୀମାନଙ୍କର ଗୋଷ୍ଠୀବିଶ୍ୱାସ ଏବଂ ଆଦର୍ଶ ଏହାର ସଂପୂର୍ଣ୍ଣ ବିରୁଦ୍ଧାଚରଣ କରେ । ସେମାନେ କହନ୍ତି- 'ତମେମାନେ ଯାହାକୁ ନୈତିକ ମୂଲ୍ୟବୋଧର ବିକାଶ ବୋଲି କୁହ, ତାହା କେତେକ ଘଟଣାର ଗୋଟିଏ ଥାକ । ଏସବୁ ଯଦିଓ ମନରେ ପ୍ରକାଶ ପାଏ, କିନ୍ତୁ ଏହା ମନର ସୃଷ୍ଟି ନୁହେଁ । ଏହା ପରିବେଶର ପ୍ରତିଫଳନ ମାତ୍ର । ପୁଣି ମନ ବସ୍ତୁଭିତ୍ତିକ ପରିବେଶର ଏକ ସୃଷ୍ଟି ବିଷୟ । ଭୌତିକ ବିତ୍ତମ୍ (Mind is a product of matter) । ପିଲାଟିଏ ଦାଢ଼ିଆ ଲୋକକୁ ଦେଖିଲେ ଭୟ କରେ । ଯେହେତୁ ମାଆର ନିଶ ନାହିଁ । ଯଦି ମାଆର ନିଶ ଦାଢ଼ି ଥାଆନ୍ତା, ତା'ହେଲେ ପିଲାଟି ଭଲ ଭାବେ ନିଶ ଦାଢ଼ି କାଟିଥିବା ଲୋକକୁ ଦେଖି ଡରନ୍ତା । ତମେ କହୁଛ ଯେ ପିଲାଟିଏ କାହାର

ଆଘାତ ପାଇଲେ ଆପେଆପେ କାନ୍ଦିବ । ମନ ବସ୍ତୁଠାରୁ ସ୍ୱତନ୍ତ୍ର ଏକ ଅଂଶ ନୁହେଁ । ଏହା ବାହାରେ ବିଶ୍ୱର ପ୍ରତିଫଳନ ମାତ୍ର । ଯାହା ଏକ ଚିତ୍ରକଳ୍ପ ହୋଇଥାଇପାରେ । ଗୋଟିଏ ଚିତ୍ର କେବେ ସ୍ଥିତିକୁ ନିୟନ୍ତ୍ରଣ କରିପାରିବ ନାହିଁ । ବରଂ ପର ହିଁ ପୂର୍ବକୁ ନିୟନ୍ତ୍ରଣ କରେ । ତମେ ଯଦି ସ୍ଥିତିରେ ପରିବର୍ତ୍ତନ ଆଣିବ, ତା'ହେଲେ ମନର ପରିବର୍ତ୍ତନ ଆସିବ । ଅର୍ଥାତ୍ ଇଚ୍ଛା ବଳରେ ଚରିତ୍ରରେ ପରିବର୍ତ୍ତନ ଘଟିବ । ରାତିର ସୁନିଦ୍ରା ସକାଳେ ପ୍ରଫୁଲ୍ଲତା ଆଣିଥାଏ । ଫଳରେ ସତ୍ତ୍ୱଗୁଣର ଆବିର୍ଭାବ ଘଟେ । ଏହାହିଁ ସ୍ୱଚ୍ଛତା ଓ ଜ୍ଞାନର ମୂଳ ଅବସ୍ଥା । କିଛି ସମୟ ପରେ ବ୍ୟକ୍ତି ଯେତେବେଳେ କ୍ଷୁଧା ଅନୁଭବ କରେ, ସେତେବେଳେ ରଜସ୍‌ଗୁଣର ଉତ୍ପନ୍ନ ହୁଏ । ସେ ଚଞ୍ଚଳ ହୁଏ ଏବଂ ଖାଇ ସାରିଲା ପରେ ତମସ୍ ବା ଆଳସ୍ୟ ତାକୁ ଗ୍ରାସ କରେ । ତେଣୁ ତିନିଗୁଣକୁ ବେଶି ଗୁରୁତ୍ୱ ଦେବା ଅନାବଶ୍ୟକ । ଉପଯୁକ୍ତ ଅବସ୍ଥା ସୃଷ୍ଟି କର । ତାହା ନିଶ୍ଚିତ ଭାବେ ଉପଯୁକ୍ତ ଗୁଣଗୁଡ଼ିକର ବିକାଶରେ ସହାୟକ ହେବ । ସୁତରାଂ ବସ୍ତୁତାନ୍ତ୍ରିକ ପରିବେଶର ଶୀଘ୍ର ପରିବର୍ତ୍ତନ ଆଣ । ଯାହା ମିଳୁଛି ତାର ସଦୁପଯୋଗ କର । ଉଦ୍ଭଟ ଗପ ତିଆରିରେ ସମୟ ନଷ୍ଟ କରନାହିଁ । ମଣିଷର ମନ ଯାହା ଅଛି, ତାହା ହିଁ ରହିବ । ଯାହା ପାରୁଛ କର । ତାହା କେବେ ନୀଚ ପଶୁର ହେବ ନାହିଁ କି ତମ କଳ୍ପିତ ଦେବତା ହେବନାହିଁ । ଏହାର ଗୋଟିଏ ସୀମିତ ପଂଜର ରହିଛି । ପରିବେଶର ଉନ୍ନତି ହେଲେ ଏହା କିଂଚିତ୍ ବିକଶିତ ହୁଏ ଏବଂ ଅବନତି ହେଲେ କିଛିଟା ସଂକୁଚିତ ହୁଏ । ତେଣୁ ଏଥିପାଇଁ ବ୍ୟସ୍ତ ହୁଅନାହିଁ । ଯଦି ସମାଜର ପୁନର୍ଗଠନ ପାଇଁ ହିଂସା ଦରକାର, ସେଥିପାଇଁ ଚିତ୍କାର କରନାହିଁ । ହାୟ, ସତ୍ୟ, ନ୍ୟାୟ ମରିଗଲା ବୋଲି ମଥା ପିଟ ନାହିଁ । ତାକୁ ସହଜ ଭାବେ ଗ୍ରହଣ କର । କାରଣ ଏହା ଗୋଟିଏ ଖରାପ ସମାଜର ପତନ ଘଟାଇବ । ସୁଫଳ ପାଇଁ ହେଉଥିବା ହିଂସାକୁ ସାଧାରଣ ହିଂସା ସହ ସମାନ ଶ୍ରେଣୀରେ ରଖାଯାଇ ପାରିବ ନାହିଁ । ନାଁ ନାଁ ଏହା ଏକ ପ୍ରକାର ପୁଣ୍ୟ । ଯଦି ତମେ ଏହା ବୁଝିପାରୁଥିବ, ତା'ହେଲେ ଚରିତ୍ରର ଉପଯୁକ୍ତ ବିକାଶ ସଂଭବ ହେବ । ତେଣୁ ଯେଉଁଥିପାଇଁ ବ୍ୟସ୍ତ ହେଉଛ, ତାହା ଅଳିକ ।

ସୁତରାଂ ଏହା ହିଁ ହେଉଛି ଦୁଇଟି ଚରମ ମତବାଦ । ଏ ମଧ୍ୟରେ ଅନ୍ୟ ସବୁର ସ୍ଥାନ । ଯେ ଯାହାର ସାମର୍ଥ୍ୟ ଅନୁସାରେ କାର୍ଯ୍ୟ କରନ୍ତି । କେତେକ କହନ୍ତି – ସାମାଜିକ ଢାଞ୍ଚାର ପରିବର୍ତ୍ତନ ଆଣିବା ନିଶ୍ଚୟ ଗୁରୁତ୍ୱପୂର୍ଣ୍ଣ । ଏକଥା କେହି ମନା କରୁନାହିଁ । କିନ୍ତୁ ନୈତିକ ମାନଦଣ୍ଡର ବିକାଶ ଜରିଆରେ ଏହା ଆସିବା ଦରକାର । ସମସ୍ତେ ମାନିନେବା ଭଳି କେତେଗୁଡ଼ିଏ ନୈତିକ ମୂଲ୍ୟବୋଧ ଓ ମାନ ରହିଛି । ଯଦି ତରବରିଆ ଭାବେ କେତେକ ନିର୍ଦ୍ଦିଷ୍ଟ ସାମାଜିକ ଢାଞ୍ଚା ତିଆରି କରାଯାଏ, ତା'ହେଲେ ପୂର୍ବ ମୂଲ୍ୟବୋଧ ଓ ମାନ ନଷ୍ଟ ହୁଏ । ଫଳରେ ଆମେ ସ୍ୱାର୍ଥ ଲୋଭରେ ମୂଳଧନ ହରାଇ ବସିବା । ଏମିତି କୌଣସି ସାମାଜିକ ଢାଞ୍ଚା ନାହିଁ– ଯାହା ସ୍ଥାୟୀ, ସାର୍ବଜନୀନ ହୋଇଥିବ ଏବଂ ମଣିଷକୁ ସମସ୍ତ ଜଞ୍ଜାଳରୁ

ସବୁଦିନ ପାଇଁ ମୁକ୍ତି ଦେଇପାରିବ । ସମାଜର ଢାଞ୍ଚା ଅବଶ୍ୟ ସବୁବେଳେ ବଦଳୁଥିବ । ଏଥିପାଇଁ ନିର୍ଦ୍ଦିଷ୍ଟ ସମୟ, ସ୍ଥାନ ଏବଂ ଅନ୍ୟାନ୍ୟ କେତେକ କାରଣ ଦାୟୀ । ହଁ, ଗୋଟିଏ ଅଂଧ ଆନୁଗତ୍ୟ ଭିତ୍ତିରେ ସାମାଜିକ ପୁନର୍ଗଠନ ଆଦୌ ଭଲ ନୁହେଁ । କାରଣ, ଲୋକମାନେ ହିଁ ସେମାନଙ୍କର ସମାଜ ଗଢ଼ନ୍ତି । ସୁତରାଂ ସମାଜର ପରିବର୍ତ୍ତନ ପାଇଁ ହେଉଥିବା ଯୋଜନାରେ କେବଳ ସଂରକ୍ଷଣ ନୁହେଁ, ନୈତିକ ମୂଲ୍ୟବୋଧ ଓ ଚାରିତ୍ରିକ ମାନର ସମୃଦ୍ଧି ମଧ୍ୟ ଆବଶ୍ୟକ । ତାହା ଆମର ଶକ୍ତି ଓ ସାମର୍ଥ୍ୟ ଭିତ୍ତିରେ ଆସିବା ଦରକାର । ଆମେ ଆଦୌ ବ୍ୟସ୍ତ ହେବା ଉଚିତ ନୁହେଁ । ଏହା ଧୀରେଧୀରେ ହେଉ । ଆମେ ଯେଉଁ ଖାଦ୍ୟ ଭଲଭାବେ ଚୋବାଇ ଖାଉ ତାହା ସହଜରେ ହଜମ ହୋଇଥାଏ । ଯାହାକୁ ଧୀରେଧୀରେ କରାଯାଏ, ତାହା ଶେଷରେ ଦ୍ରୁତତମ ବୋଲି ପ୍ରମାଣିତ ହୋଇଥାଏ ।

'ଦୟାକରି ଧରି ନିଅନ୍ତୁ ନାହିଁ ଯେ ଆମେ ଯେଉଁ ଚରିତ୍ର ଓ ନୈତିକ ମୂଲ୍ୟବୋଧ କଥା କହୁଛୁ, ତାହା ମଣିଷକୁ ଦେବଦୂତରେ ପରିଣତ କରିବା ପାଇଁ ଉଦ୍ଦିଷ୍ଟ ନୁହେଁ । ଆମର ସେଇ ସବୁ ଅହଂକାରର ଆବଶ୍ୟକତା ନାହିଁ । ଆମେ ସବୁ ମଣିଷ, ଦେବଦୂତ ହେବାରେ ଆମର କୌଣସି ଭୟ ନାହିଁ । ଆମେ ଯେତେ ଭଲ ହେବା, ସେଥିରେ କିଛି ଯାଏ ଆସେ ନାହିଁ । ସେଥିପାଇଁ ଚାଲ କିଛି ଭଲ କାମ କରିବା । ମନରେ କୌଣସି ଭୟ ରଖିବା ନାହିଁ । ବିପଦ ବରଣ କରିବାକୁ ଡରିବା ନାହିଁ । ଯେତିକି ନୈତିକ ବିକାଶ ସଂଭବ, ତାହା କରିବା । ଏହା ସତ୍ୟ ଯେ, ଗୋଟିଏ ଉପଯୁକ୍ତ ସାମାଜିକ ଢାଞ୍ଚା ନୈତିକ ବିକାଶ ପାଇଁ ବିଶେଷ ସହାୟକ ହୋଇଥାଏ । କିନ୍ତୁ ଏହାଠାରୁ ଅଧିକ ସତ୍ୟ ହେଉଛି ଯଥାର୍ଥ ନୈତିକ ବିକାଶ ଉପରେ ଉତ୍ତମ ସାମାଜିକ ଢାଞ୍ଚା ତିଆରି । ନୈତିକ ମୂଲ୍ୟବୋଧରେ ନିଛକ ସତ୍ୟ ହିଁ ହୁଏ ମୂଳଦୁଆ । ତା' ଉପରେ ସାମାଜିକ ଢାଞ୍ଚା ତିଆରି ହୁଏ । ସେଇ ମୂଳଦୁଆକୁ ଛିନ୍‌ଭିନ୍ କରି ତା' ଉପରେ କିପରି ଅଟ୍ଟାଳିକା ତିଆରି କରିବ ବୋଲି ଆଶା କରୁଛ ?'

ଆଉ କେତେଜଣ କହନ୍ତି- 'ସାମାଜିକ ଢାଞ୍ଚାର ପରିବର୍ତ୍ତନ ଆମେ ଚାହୁଁ । ମାତ୍ର ଏହା ସହିତ ସ୍ଥାୟୀ ମୂଲ୍ୟବୋଧର ସଂରକ୍ଷଣ ଏକାନ୍ତ ଆବଶ୍ୟକ । ପୁଣ୍ୟ କ୍ଷେତ୍ରରେ ବିଶ୍ୱାସର ଭୂମିକା ଗୁରୁତ୍ୱପୂର୍ଣ୍ଣ । କିନ୍ତୁ ଜଣେ ନିଜର ନିର୍ଦ୍ଦିଷ୍ଟ ଆଚାର (ନୈମିତ୍ତିକ) ଭୁଲିଯିବା ଉଚିତ୍ ନୁହେଁ । ପ୍ରତ୍ୟେକ ସାଧାରଣ ନିୟମ (ନିତ୍ୟ ଧର୍ମ)ର କେତେକ ବ୍ୟତିକ୍ରମ ରହିଛି । ଉଦାହରଣ ସ୍ୱରୂପ- ପ୍ରତିଦିନ ପ୍ରାର୍ଥନା କରିବା ତୁମ ପାଇଁ ଗୋଟିଏ ନିୟମ । ଏଥିରେ ଭୁଲ ହୁଏ ନାହିଁ । ଗୋଟିଏ ନିର୍ଦ୍ଦିଷ୍ଟ ସମୟରେ ତାହା ପାଳନ କରିବା ହେଉଛି ବିଧି । ଧରାଯାଉ, ତମର ପଡ଼ିଶା ଘର ନିଆଁରେ ପୋଡ଼ିଯାଇଛି । ତା'ହେଲେ ତମେ କ'ଣ ପ୍ରାର୍ଥନା ଛାଡ଼ି ନିଆଁ ଲିଭାଇବା ପାଇଁ ସେଠାକୁ ଯିବନାହିଁ । ନିଆଁ ଲିଭାଇ ସାରିଲା ପରେ ତମେ ଶାନ୍ତ ମନରେ ପ୍ରାର୍ଥନାରେ ଯୋଗଦିଅ । ଏହାକୁ କୁହାଯାଏ ନିତ୍ୟ-ନୈମିତ୍ତିକ-ବିବେକ (right discrimination between General and the immediate duties) । ଏହିପରି ପୃଥକ ଚିନ୍ତନ

ଜୀବନରେ ସର୍ବତ୍ର ରହିବା ଆବଶ୍ୟକ । ଆମେ ସାମ୍ୟବାଦୀମାନଙ୍କର ମତସହ ସମ୍ମତ ହୋଇପାରିବା ନାହିଁ । କାରଣ ସେମାନଙ୍କର ମତରେ ହିଂସାବିନା ବିପ୍ଳବ ଅସମ୍ଭବ ।

ଭାରତଭଳି ଦେଶରେ ଆମେ ଗଣତାନ୍ତ୍ରିକ ପଦ୍ଧତିରେ ସରକାର ପ୍ରତିଷ୍ଠା କରିବାକୁ ଚାହୁଁଛୁ । ଏହା ମଧ୍ୟ ଛୋଟ ବାକ୍ସ ଜରିଆରେ ସମ୍ଭବ ହୋଇଛି । ସେଥିପାଇଁ ହିଂସାର ଆବଶ୍ୟକତା ନାହିଁ । ଆମେ ଆଉ କିଛିବର୍ଷ ଅପେକ୍ଷା କରିବାକୁ ପ୍ରସ୍ତୁତ ଅଛୁ । ଧୈର୍ଯ୍ୟର ସହ ସେଇ ଲକ୍ଷ୍ୟରେ ମଧ୍ୟ କାମ କରିବାକୁ ରାଜି । କିନ୍ତୁ କ୍ଷମତାରେ ଥିଲାବେଳେ ଦଳ ଯଦି ନିର୍ବାଚନର ପବିତ୍ରତା ଲକ୍ଷ୍ୟ ନକରନ୍ତି, ତା'ହେଲେ କର୍ତ୍ତୃତ୍ୱ ଓ ପଦବୀର ଦୁରୁପଯୋଗ ହେବ । ପବିତ୍ର ମାଧ୍ୟମ (ଅହିଂସା) ଉପରେ ଜୋର ନଦେବା ଅର୍ଥ ଦେଶର ନିରନ୍ତର କ୍ଷତି ସାଧନ କରିବା । ସୁତରାଂ ଆମେ ଗୋଟିଏ ନିର୍ଦ୍ଦିଷ୍ଟ ଅବସ୍ଥାରେ (ନୈମିତ୍ତିକ ଧର୍ମ) ଛାଡ଼ିବାକୁ ଅନୁଚିତ ବୋଲି କହିବା ନାହିଁ । ଅହିଂସା ମାର୍ଗ ଛାଡ଼ି ଅନ୍ୟ ବାଟରେ ଯିବା ଆମ ପକ୍ଷରେ ଅବଶ୍ୟମ୍ଭାବୀ ଓ ଦୁଃଖଦାୟକ । ତମେ ଏହାକୁ ଜରୁରୀକାଳୀନ ଅବସ୍ଥା (ଆପଦ୍‌ଧର୍ମ) ବୋଲି କହିପାର । କିନ୍ତୁ ପାପ ଓ ଅଧର୍ମ ବୋଲି କୁହ ନାହିଁ । ଏପରି କର୍ମ ଜରୁରୀକାଳୀନ ଅବସ୍ଥାରେ ସ୍ଥାୟୀ ମୂଲ୍ୟବୋଧର କ୍ଷତି ଘଟାଇଥାଏ । ଧରାଯାଇପାରେ ଏହା ଠିକ୍ ବାଟରୁ ସାମାନ୍ୟ ବ୍ୟତିକ୍ରମ । ପରେ ପୁଣି ଠିକ୍ ବାଟକୁ ଆମେ ଫେରିବା । କେମିତି ମରାମତି ବେଳେ ଗୋଟିଏ ସ୍କ୍ରୁ (screw)ଢିଲା କରିବାକୁ ପଡ଼େ । ତାହାକୁ ପୁଣି ଆଣ୍ଟି ଦିଆଯାଏ । ଫଳରେ ସ୍ଥାୟୀ ମୂଲ୍ୟବୋଧ ଶକ୍ତିଶାଳୀ ହୋଇଥାଏ । ବାଟଟି ହେଲା, ଗୋଟିଏ କିଳାକୁ ହଲାଇ ତାକୁ ଭିତରକୁ ନିଆଯାଏ ଏବଂ ତାହା ଟାଣ ହୁଏ । ଅସ୍ଥାୟୀ ଭାବେ ହିଂସାକୁ ଆଦରି ନେବାର ଅର୍ଥ ଅହିଂସାର ସ୍ୱାର୍ଥରକ୍ଷା କରିବା । ଯଦି ଏପରି ନକରୁଛେ ଅହିଂସା ଆମଠାରୁ ଆହୁରି ଦୂରକୁ ଚାଲିଯିବ । ବେଳେବେଳେ ଗଛର ଭଲ ବଢ଼ନ୍ତି ପାଇଁ କିଛି ଡାଳ କାଟିଦେବାକୁ ପଡ଼େ ନାହିଁକି ? ମୂଳ କାଟିବା ପାଇଁ ତମକୁ କୁରାଢ଼ୀ ଚଳାଇବା ଗଛ ଡାଳ କାଟି ସଜାଡ଼ିବା ମଧ୍ୟରେ ପାର୍ଥକ୍ୟ ବୁଝିବା ଦରକାର । ପୁଞ୍ଜିବାଦ, ସାମ୍ରାଜ୍ୟବାଦ, ବର୍ଣ୍ଣବୈଷମ୍ୟବାଦ, ସବୁଗୁଡ଼ିକ ଅହିଂସାର ମୂଳୋତ୍ପାଟନ ପାଇଁ ବାହାରିଛନ୍ତି । ସାମ୍ୟବାଦ ମଧ୍ୟ ସେଇ ବିଶ୍ୱାସ ମୂଳରେ ଆଘାତ ଦେବାରେ ଲାଗିପଡ଼ିଛି । ତାର ଲୋଡ଼ା, ଭେଦଭାବ ନରଖି ହିଂସା ଆଚରଣ । ହୋଇପାରେ, ଏହାର ଉଦ୍ଦେଶ୍ୟ ସେଇଆ ନୁହେଁ । କିନ୍ତୁ ମୋଟାମୋଟି ଦେଖିଲେ ଫଳାଫଳ ହେଉଛି ହିଂସା । ତେଣୁ ଆମେ ସାମ୍ୟବାଦକୁ ସମର୍ଥନ କରିପାରିବା ନାହିଁ । କିନ୍ତୁ ଠିକ୍ ସେତିକିବେଳେ ନୈତିକ ମୂଲ୍ୟବୋଧ ନାମରେ ପ୍ରଗତିର ପଥ ଅବରୋଧ କରିବା, ନିର୍ଯ୍ୟାତନାର କାଳ ବିଳମ୍ବିତ କରିବା, ତଥା ଦାରିଦ୍ର୍ୟର କଣ୍ଠରୋଧ କରିବା ମଧ୍ୟ ଅନୁଚିତ । ଏହା ନିର୍ଦ୍ଦିଷ୍ଟ ଭାବେ କୌଣସି ପୁଣ୍ୟର ଅନୁପାତିକ ଉଚ୍ଚ ମୂଲ୍ୟାୟନ ହୋଇପାରେ ।

ଏହାଛଡ଼ା ଅସ୍ତ୍ରଧାରଣକୁ ବୈଦେଶିକ ଆକ୍ରମଣ କିମ୍ବା ଆନ୍ତର୍ଦେଶୀୟ ବିଶୃଙ୍ଖଳାର ପ୍ରତିରୋଧ ରୂପେ ବିଚାର କରାଯାଇପାରେ । ଏହା ହିଂସା ନୁହେଁ । ବରଂ ଏହା ଦେଶ ପ୍ରତି

କର୍ତ୍ତବ୍ୟର ଅଂଶ ବିଶେଷ । ଏହାକୁ କୁହାଯାଇପାରେ ଦଣ୍ଡ ଧର୍ମ । ଏପରି ନୈତିକ ବ୍ୟତିକ୍ରମକୁ ଛାଡ଼ିନେଲେ ଆମେ ତମର ଅନ୍ୟସବୁ କାରଣ ପାଇଁ ଅହିଂସା ଉପରେ ସମ୍ମତି ପ୍ରକଟ କରୁଛୁ ।

ସନ୍ଥମାନଙ୍କର ମତବାଦ ଏବଂ ସାମ୍ୟବାଦୀମାନଙ୍କର ମତବାଦ ଦୁଇଟି ଭିନ୍ନ ଭିନ୍ନ ମତବାଦ । ପୂର୍ବରୁ କୁହାଯାଇଥିବା ଅନ୍ୟ ଦୁଇଟି ଆଦର୍ଶବାଦକୁ ନୈତିକ ବିଚାର ବୋଲି କୁହାଯାଇପାରେ । ପ୍ରଥମଟି ଏ ଦେଶରେ ବୁଦ୍ଧ ଓ ଗାନ୍ଧୀଙ୍କ ଦ୍ୱାରା ଖୁବ୍ ଭଲ ଭାବରେ ପ୍ରଚାରିତ ହୋଇଛି । ଆଉ କେତେକ ଧାର୍ମିକ ଗୁରୁମାନେ ଏହାକୁ ଗ୍ରହଣ କରିନେଇଛନ୍ତି । କେବଳ ଅଳ୍ପ କେତେଜଣ ସ୍ମୃତିକାର ଦ୍ୱିତୀୟ ବିଚାର ସପକ୍ଷରେ ମତ ଦେଇଛନ୍ତି । ଅନେକ କଂଗ୍ରେସ କର୍ମୀ, କଂଗ୍ରେସ ଗ୍ରୁପ୍ ଏବଂ ପ୍ରାୟ ସବୁ ସାମ୍ୟବାଦୀମାନେ – ଯେଉଁମାନେ ଭାରତୀୟ ରାଷ୍ଟ୍ରୀୟତା ପ୍ରତି ଅନୁରକ୍ତ– ସମସ୍ତେ ଏହି ଗୋଷ୍ଠୀରେ ଅନ୍ତର୍ଭୁକ୍ତ । ଆଉ କେତେଜଣ, ଏପରିକି ଗାନ୍ଧୀବାଦୀମାନେ ମଧ୍ୟ ସମୟ ସୁଅରେ ନିଜ ନିଜର ସ୍ଥାନ ପରିବର୍ତ୍ତନ କରିଛନ୍ତି ।

ଏହି ବିଶ୍ଳେଷଣରୁ ଆମେ କହି ପାରିବା ଯେ କିଶୋରୀଲାଲ୍ ଗାନ୍ଧୀଙ୍କ ଆଦର୍ଶର, ଆପେକ୍ଷିକ ଭାବେ ସତ୍ୟାଗ୍ରହ ନୀତିର ଭଲ ଦିଗ ଏବଂ ସାମ୍ୟବାଦୀମାନଙ୍କ ଆଦର୍ଶ– ବିପ୍ଳବ ଜରିଆରେ ସାମାଜିକ ପୁନର୍ଗଠନର ଭିନ୍ନ ଦିଗ ସଂପର୍କରେ ଚର୍ଚ୍ଚା କରିଛନ୍ତି ।

## ମାର୍କ୍ସ ଏବଂ ଗାନ୍ଧୀ

ଆଧୁନିକ ଯୁଗରେ ଗାନ୍ଧୀ (ମହାତ୍ମା) ଏବଂ ବିଶିଷ୍ଟ ଚିନ୍ତକ ମାର୍କ୍ସ (ମହାମୁନି) – ଦୁଇଜଣଙ୍କ ଆଦର୍ଶ ସଂପର୍କରେ ତୁଳନାତ୍ମକ ବିଶ୍ଳେଷଣ ଆମ ପାଇଁ ଖୁବ୍ ଆକର୍ଷଣୀୟ ନୁହେଁକି ? ବିଗତ ଶହେ ବର୍ଷର ସାମାଜିକ ଜୀବନ ଓ ମାନବିକତାର ଉତ୍‌ଥାନପତନ ଏହି ମହାନ ନାମ ସହ ମୁଖ୍ୟତଃ ଜଡ଼ିତ । ଲେନିନ୍ ମାର୍କ୍ସଙ୍କୁ ଗର୍ଭିତ କରି ପକାଇଛନ୍ତି ଏବଂ ଟଲଷ୍ଟୟଙ୍କ ଛାୟା ଗାନ୍ଧୀଙ୍କ ଜୀବନ ଆକାଶକୁ ଆଚ୍ଛାଦିତ କରିଛି । ଦୁଇଟି ଆଦର୍ଶବାଦ ମୁହାଁମୁହିଁ ଛିଡ଼ା ହୋଇଛନ୍ତି । ପ୍ରତ୍ୟେକ ଅପରକୁ ଗିଳିଦେବାକୁ ପ୍ରସ୍ତୁତ । ବାହାରକୁ ଯାହା ଜଣାଯାଏ ଗୋଟିଏ ପଟେ ଋଷିଆକୁ ସାମ୍ୟବାଦୀମାନେ ମାଡ଼ିବସିଛନ୍ତି । ଅନ୍ୟ ପଟେ ଯୁକ୍ତରାଷ୍ଟ୍ରର ପୁଞ୍ଜିବାଦୀମାନେ ଗଣତନ୍ତ୍ରର ମୁଖା ପିନ୍ଧି ରଣ ହୁଂକାର ଦେଉଛନ୍ତି । କିନ୍ତୁ ଆଦର୍ଶଗତ ଭାବେ ପୁଞ୍ଜିବାଦୀମାନେ ତାଙ୍କର ଜୀବନଶକ୍ତି ହରାଇ ବସିଛନ୍ତି । ସାମରିକ ଶକ୍ତିବଳରେ ସେମାନେ ବାହାରକୁ ବଳବାନ ଭଳି ଦେଖାଯାଉଛନ୍ତି । ସାମ୍ୟବାଦର ବିରୋଧୀ ଭାବେ ଏହାର ପ୍ରକୃତ ଅସ୍ତିତ୍ୱ ଅଛି ବୋଲି ମୁଁ ଭାବୁନାହିଁ । ଅନ୍ୟ ପକ୍ଷରେ ଗାନ୍ଧିବାଦୀ ଆଦର୍ଶବାଦ ଗୋଟିଏ ସଂଗଠିତ ରୂପରେ ଉଭା ହୋଇନାହିଁ, ଏହା ସତ । କିନ୍ତୁ ସତ୍‌ପଥରେ ଯିବାପାଇଁ ଭାରତ ପରିପୂର୍ଣ୍ଣ ସାମର୍ଥ୍ୟ ବହନ କରେ । ମୁଁ ବିଶ୍ୱାସ କରେ ଯେ ପରିଶେଷରେ ଗାନ୍ଧିବାଦ ଓ ସାମ୍ୟବାଦର ଶକ୍ତି ପରୀକ୍ଷା ହେବ । ଏହି କ୍ଷୁଦ୍ର ପୁସ୍ତିକାଟିରେ କିଶୋରୀଲାଲ୍ ଦୁଇଟି ଶକ୍ତିଶାଳୀ ଆଦର୍ଶବାଦର ଆକଳନ କରିବାକୁ ଚେଷ୍ଟା କରିଛନ୍ତି । ବିଷୟଟି ସାଂପ୍ରତିକ ସମୟ ପାଇଁ ଅତ୍ୟନ୍ତ ଆଗ୍ରହ ସୃଷ୍ଟିକରେ । ଲେଖକଙ୍କ ନିରାଡ଼ମ୍ବର ଶୈଳୀ ସତ୍ତ୍ୱେ ପାଠକ ପ୍ରଥମ ପୃଷ୍ଠାରୁ ଶେଷ ପୃଷ୍ଠା ପର୍ଯ୍ୟନ୍ତ ନପଢ଼ି

ରହିପାରିବେ ନାହିଁ । ତାଙ୍କ ଗାନ୍ଧିବାଦୀ ଚିନ୍ତନର ବ୍ୟାଖ୍ୟା ନିଶ୍ଚିତ ଭାବେ ପାଣ୍ଡିତ୍ୟପୂର୍ଣ୍ଣ । କାରଣ ସେ ମଧ୍ୟ 'ଗାନ୍ଧି ବିଚାର ଦୋହନ' ଗୁଜରାଟୀ ବହିର ଲେଖକ । ବହୁ ବର୍ଷ ପୂର୍ବେ ତାହା ପ୍ରକାଶ ପାଇଥିଲା । ମାର୍କ୍ସବାଦୀ ମତବାଦ ଉପରେ ତାଙ୍କର ଲେଖା ସମାନ ଭାବରେ ପାଣ୍ଡିତ୍ୱପୂର୍ଣ୍ଣ ନହୋଇ ପାରେ । ତଥାପି ମୋର ବିଶ୍ୱାସ - ସେ ଯଥେଷ୍ଟ ଯତ୍ନର ସହ କାର୍ଯ୍ୟ କରିଛନ୍ତି । ଲେଖାରେ କାହାପ୍ରତି ଅନ୍ୟାୟ ହୋଇନାହିଁ ।

ଗାନ୍ଧି ଓ ମାର୍କ୍ସଙ୍କ ତୁଳନାତ୍ମକ ଅଧ୍ୟୟନ କ୍ଷେତ୍ରରେ ପୃଥିବୀ ଆଗ୍ରହ ଦେଖାଇପାରେ ବା ନପାରେ । ମାତ୍ର ଆମ ଦେଶର ଶିକ୍ଷିତ ବ୍ୟକ୍ତିମାନଙ୍କ ପକ୍ଷରେ ଏହା ଏକ ଦୈନନ୍ଦିନ ଚର୍ଚ୍ଚାର ବିଷୟ ପାଲଟି ଯାଇଛି । ପ୍ରତ୍ୟେକ ଆଲୋଚକ ନିଜର ଶକ୍ତି ଅନୁସାରେ ଏ ସଂପର୍କରେ ଚର୍ଚ୍ଚା ଓ ଆକଳନ କରିବେ । ଗାନ୍ଧିବାଦୀ ଚିନ୍ତାଧାରା ଚତୁଃପାର୍ଶ୍ୱରେ ଏକ ଆଧ୍ୟାତ୍ମିକ ରଶ୍ମିର ଉଜ୍ଜ୍ୱଳ ବଳୟ ଲକ୍ଷ୍ୟ କଲାବେଳେ ମାର୍କ୍ସବାଦ ପଛରେ ବୈଜ୍ଞାନିକ ବିଶ୍ଳେଷଣର ସମର୍ଥନ ରହିଛି । ଆମକୁ ସ୍ୱରାଜ ଆଣିଦେଲା ପରେ ବର୍ତ୍ତମାନ କେହି ଏହାକୁ ସ୍ୱପ୍ନବାଦୀ ଓ ଅସମ୍ଭାବ୍ୟ ବୋଲି କହିପାରିବେ ନାହିଁ । ମାର୍କ୍ସବାଦ ମଧ୍ୟ ତାହାର ଶକ୍ତିରେ ପୁରୁଣା ଚୀନକୁ ନବଜୀବନରେ ଅଭିମନ୍ତ୍ରିତ କରିଛି । ଏଥିରୁ କେତେକ କର୍ମୀ ମନେ କରନ୍ତି- ଦୁଇଟି ମତାବାଦ ବୁଝିବାର ସହଜ ଉପାୟ ହେଉଛି- 'ସାମ୍ୟବାଦ ବିଯୁକ୍ତ ହିଂସା ହେଉଛି- ଗାନ୍ଧିବାଦ ।' କିନ୍ତୁ ମୂଳକଥା ହେଉଛି - ଦୁଇଟି ମତବାଦର ଆଦୌ ବୁଝାମଣା ହୋଇନାହିଁ, ହୋଇପାରିବ ନାହିଁ । ସେମାନଙ୍କ ମଧ୍ୟରେ ଥିବା ପାର୍ଥକ୍ୟ ହେଉଛି ମୌଳିକ । ସେ ଦୁଇଟି କିପରି ଭୟଙ୍କର ଭାବେ ବିପରୀତଧର୍ମୀ ଏବଂ ଦିନର ଆଲୋକ ଭଳି ସ୍ପଷ୍ଟ, ଏସବୁ ଏଇ ଅଧ୍ୟାୟରେ ଦର୍ଶାଯାଇଛି ।

କୁହାଯାଇଛି - ଗାନ୍ଧିବାଦ ସାମ୍ୟବାଦଠାରୁ ପୃଥକ । କାରଣ ଏହା ଅହିଂସା ଉପରେ ଅଧିକ ଗୁରୁତ୍ୱ ଦିଏ । ମୁଁ କହେ- 'ଦୁହେଁ ଶାରୀରିକ ଦୃଷ୍ଟିରୁ ସମାନ । କିନ୍ତୁ ରାଜନୈତିକ ମାରପେଞ୍ଚ ବଳରେ ଜଣେ ଭଲ ଭାବରେ ଖାଇପିଇ ଅନ୍ୟଠାରୁ ଦୁଇଗୁଣ ବିଶାଳ ବପୁ ଧାରଣ କରିଛି । ସେମାନଙ୍କ ମଧ୍ୟରେ ସାମାନ୍ୟ ପାର୍ଥକ୍ୟ ମଧ୍ୟ ଅଛି । ଜଣେ ନିଶ୍ୱାସ ନେଉଛି ଏବଂ ଅନ୍ୟଜଣେ ମରି ଯାଇଛି । ତେଣୁ ଜଣକ ପାଇଁ ଭୋଜନ ପ୍ରସ୍ତୁତ ହେଲାବେଳେ ଅନ୍ୟ ଜଣକ ପାଇଁ କଫିନ୍ ତିଆରି ହେଲା ।' ସମାନ ଭଳି ଦେଖାଯାଇଥିବା ଦୁଇ ମତବାଦରୁ ଅହିଂସା ତୁଚ୍ଛ ପାର୍ଥକ୍ୟକୁ ବାଦଦେଲେ ଦୁଇଟି ଯୋଡ଼ି ଠିକ୍ ଏକାପରି । କିଶୋରୀଲାଲ୍ ସେମାନଙ୍କର ଆଖି ଓ ନାକ ମଧ୍ୟରେ ଅସମତା ଦର୍ଶାଇଛନ୍ତି । ଜଣେ ଜୀବିତ ବ୍ୟକ୍ତିର ନାକ ଓ ଆଖି କିପରି ଜଣେ ମୃତ ବ୍ୟକ୍ତିର ନାକ ଓ ଆଖି ସହ ସମାନ ହୋଇପାରିବ ? ଯଦିଓ ବାହାରକୁ ଏହା ଦୁଇଜଣଙ୍କର ସମାନ ଭଳି ଦେଖାଯିବ ।

ସାମ୍ୟବାଦ ବସ୍ତୁତଃ ଆସକ୍ତି ଜଡ଼ିତ ଆଦର୍ଶବାଦ । ସୁତରାଂ ଏହାର ଦାର୍ଶନିକ ପରୀକ୍ଷଣ ଦିଗ ସଂପର୍କରେ ମୁଁ ବିଚାର କରେନାହିଁ । ସମର୍ଥକମାନେ ସପକ୍ଷରେ ବିରାଟ ଦର୍ଶନର ଅଟ୍ଟାଳିକା ନିର୍ମାଣ କରିଥିଲେ ହେଁ ଯଥାର୍ଥତଃ ଏହାର କୌଣସି ବକ୍ତବ୍ୟ ନାହିଁ । କୌଣସି

ଅଟ୍ଟାଳିକା ହୋଇ ନଥିବାରୁ ଏକ ଛଳନାର ତାସ୍‌ଘର କୁହାଯାଇପାରେ । ସେମାନଙ୍କ ଦୃଷ୍ଟି ଆଗରେ ସବୁ ହଳଦିଆ । କାରଣ ତାଙ୍କର ସବୁ ବୁଦ୍ଧିଜୀବୀମାନେ କାମଳ ରୋଗରେ ଆକ୍ରାନ୍ତ । ଉଦାହରଣ ସ୍ୱରୂପ, ସେମାନେ ଆଭ୍ୟନ୍ତରୀଣ ଦ୍ୱନ୍ଦ୍ୱ ଉପରେ ବିଶ୍ୱାସ କରନ୍ତି । ପୃଥିବୀରେ ଦ୍ୱନ୍ଦ୍ୱ ଛଡ଼ା ଆଉ କିଛି ନାହିଁ । ଶେଷ ବିଶ୍ଳେଷଣ ହେଉଛି କିଛି ନାହିଁ । ସେମାନେ ଅଣୁବାଦୀ କଣାଦଙ୍କ କଥା ମନେ ପକାଇଦିଅନ୍ତି । 'ଅଣୁ, ଅଣୁ, ଅଣୁ' କହି ସିଏ ଚିତ୍କାର କରିକରି ମରିଗଲେ । ମାଆର ସ୍ତନରୁ ତାର ନୂଆ ପିଲାପାଇଁ କ୍ଷୀର ଝରିଯାଏ । ଏହି ଆଶ୍ଚର୍ଯ୍ୟ ଘଟଣା କିପରି ଘଟେ ? ସେମାନଙ୍କ ଦୃଷ୍ଟିକୋଣରୁ ଏହା ହେଉଛି ମା'ର ସ୍ତନ ଓ ଶିଶୁର ମୁହଁ ମଧ୍ୟରେ ଦ୍ୱନ୍ଦ୍ୱର କାରଣ । ମୁଁ ଅତି ହାଲୁକା ଭାବରେ ଏହାର ଉଦାହରଣ ଦେଉଛି । କିନ୍ତୁ ଏହି ଲୋକମାନେ ଏହାକୁ ଅତି ଗୁରୁତ୍ୱର ସହ ଗ୍ରହଣ କରିବେ । ସଂକ୍ଷେପରେ ଆମେ ଯାହାକୁ ସହଯୋଗ ବୋଲି କହୁ, ତାକୁ ସେମାନେ ଦ୍ୱନ୍ଦ୍ୱ ବୋଲି କହିବେ । ସେମାନଙ୍କ ଦୃଷ୍ଟିରେ ପ୍ରକୃତ ପ୍ରତିବାଦ ମଧ୍ୟ ଗୋଟିଏ ମହାନ୍ ଦ୍ୱନ୍ଦ୍ୱ । ରଘୁବୀରଙ୍କ ପରିଭାଷାରେ କୁହାଗଲେ ଏହା ହେବ 'per conflict' । ଏପରି ମତାନ୍ଧ ଲୋକମାନଙ୍କ ସହ କ'ଣ ବା ଯୁକ୍ତି କରାଯାଇପାରେ । ତାଙ୍କୁ ଦେଖିଲେ ଖାଲି ଆଶ୍ଚର୍ଯ୍ୟ ହେବା କଥା । ସେମାନେ କୌଣସି ସତ୍ୟର ଦର୍ଶନ ସଂପର୍କରେ ମତଦେବାକୁ ନାରାଜ । ନିଜର ସୁବିଧା ପାଇଁ ତାଙ୍କର ଦର୍ଶନ ତିଆରି ହୁଏ ।

ସେମାନେ ବେଳେବେଳେ ବସ୍ତୁରୁ ମନର ସୃଷ୍ଟି ସଂପର୍କର ଚର୍ଚ୍ଚା କରନ୍ତି । ବେଳେବେଳେ ତାର ଓଲଟା ମଧ୍ୟ । କେବଳ ପାଗଳଙ୍କ ଛଡ଼ା ଆଉ କେହି ବସ୍ତୁରୁ ମନର ସୃଷ୍ଟି ସଂପର୍କରେ ବିଶ୍ୱାସ କରିବ ? ମନ ଯଦି ବିଶ୍ୱ ସୃଷ୍ଟିର କାରଣ, କିଏ କାହିଁକି ଭଗବାନଙ୍କ ଆବଶ୍ୟକତା ଉପରେ ଚିନ୍ତା କରିବ ? କିନ୍ତୁ ମନ ଯଦି ବସ୍ତୁର ସୃଷ୍ଟି ହୁଏ, ତା'ହେଲେ 'ଆତ୍ମା'ର ପରିଚିତି କ'ଣ ମନ ଓ ବସ୍ତୁଠାରୁ ସ୍ୱତନ୍ତ୍ର । 'ଆତ୍ମା' ବିଷୟରେ ସାମ୍ୟବାଦୀମାନଙ୍କ ଗବେଷଣାଗାରରେ କେଉଁଠି ଚର୍ଚ୍ଚା ହୁଏ ନାହିଁ । ଯଦି କେହି ସେ ସଂପର୍କରେ କହେ, ତାହା ସେମାନେ ଅକୁଣ୍ଠିତ ଭାବରେ ପ୍ରତ୍ୟାଖ୍ୟାନ କରନ୍ତି । ଏପରି ତର୍କ ବିଶାରଦମାନଙ୍କୁ ଦେଖି ଶଙ୍କରାଚାର୍ଯ୍ୟ କହନ୍ତି – 'ମୋର ତମ ସହିତ କଳି କରିବାର ନାହିଁ । ତମେ ଆତ୍ମାକୁ ଅସ୍ୱୀକାର କରୁଛ । ତମେ ନିଜେ ତ ଆତ୍ମା । ଏକଥାରେ ଯଦି ରାଜିହୁଅ, ତା'ହେଲେ ତମର ସ୍ଥିତି ଦ୍ୱାରା ତାହା ପ୍ରମାଣିତ । ଯଦି ପ୍ରତ୍ୟାଖ୍ୟାନ କରୁଛ, ତା'ହେଲେ ନିଜକୁ ଅସ୍ୱୀକାର କରୁଛ ।' ଯିଏ ଅଭିଯୋଗ କରେ ଯେ ସେ ଶୋଇଛି, ସେ ପ୍ରମାଣ କରିଦିଏ ସେ ଜାଗ୍ରତ । ଯିଏ ଜୋର କରି କହେ ଯେ ସେ ଚାହିଁଛି, ସେ ଶୋଇଥାଏ । ସୁତରାଂ ଏହି ପ୍ରତ୍ୟାଖ୍ୟାନ ଯୋଗୁଁ ତୃତୀୟ ପକ୍ଷ ଅର୍ଥାତ୍ ଆତ୍ମା – ମନ ଓ ବସ୍ତୁର ଆକାର ଓ ଅବସ୍ଥିତି ଜାଣିପାରେ । ଫଳରେ ସାମ୍ୟବାଦ ସାମାଜିକ ପୁନର୍ଗଠନର ଭଉଁରୀ ଭିତରେ ରହେ । ପୁଣ୍ୟର ସ୍ଥାନ ସଂପର୍କରେ ତାର କୌଣସି ସ୍ୱାଧୀନ ଓ ଗୁରୁତ୍ୱପୂର୍ଣ୍ଣ ଭୂମିକା ନାହିଁ । ଆମକୁ ଯାହା ଆଧ୍ୟାତ୍ମିକ ଗୁଣାବଳୀ ବୋଲି ମନେହୁଏ, ସେମାନଙ୍କ ପାଇଁ

ତାହା ଅର୍ଥନୈତିକ ଅବସ୍ଥାର ଫଳ । ଏକ ଆତ୍ମାବିହୀନ ଆଦର୍ଶବାଦରେ ବ୍ୟକ୍ତି ସ୍ୱାଧୀନତାର କୌଣସି ସ୍ଥାନ ନାହିଁ । ଭଣ୍ଡାରୀ ମୁଣ୍ଡ ଲଣ୍ଡା କଲାବେଳେ ବାଳର ସଂଖ୍ୟା ଗଣେ କି ? ବ୍ୟକ୍ତିମାନେ ଆସନ୍ତି ଓ ଯାଆନ୍ତି । ସମାଜ ସବୁ ମାନିନିଏ । ତେଣୁ ସମାଜ ବଂଚିରହେ । ବ୍ୟକ୍ତିର କୌଣସି ମୂଲ୍ୟ ନାହିଁ ।

ସଗରର ପୁତ୍ରମାନେ ଯେପରି ଗଂଗାର ଉତ୍ସ ଖୋଜି ବାହାର କରିଥିଲେ, ସେହିପରି ଏହି ଚିନ୍ତାନାୟକମାନେ ସମଗ୍ର ମାନବ ଜାତିର ଇତିହାସ ଖୋଜି ବାହାର କରିଛନ୍ତି । ସେମାନେ ଏହି ସିଦ୍ଧାନ୍ତରେ ପହଞ୍ଚିଛନ୍ତି ଯେ ଶରଟିଏ ମାରିଦେଲେ ସେ ତାର ବାଟରୁ ଓହରିଯିବ ନାହିଁ । କିନ୍ତୁ ନିଶ୍ଚିତ ଭାବେ ନିର୍ଣ୍ଣୟାତ୍ମକ ଭୂମିକା ନେବ । ଏହା ମଧ୍ୟ ମାନବ ଜାତି ପକ୍ଷରେ ସତ୍ୟ । ଏହାର ଅତୀତ ଇତିହାସ ଭବିଷ୍ୟତର ଗତିପଥ ସବୁଦିନ ପାଇଁ ସ୍ଥିର କରିଦେଇଛି । ଆମର ସ୍ୱାଧୀନ କାର୍ଯ୍ୟ ବୋଲି କିଛି କରିବାର ନାହିଁ । ସବୁକଥା ନିର୍ଦ୍ଧାରିତ ହୋଇ ସାରିଛି । ପ୍ରଥମେ ରକ୍ତର ନଦୀ ବହିବ । ତା'ପରେ କ୍ଷୀରର ନଦୀ, ତା'ପରେ ମହୁ, ଶେଷରେ ଥଣ୍ଡା ଓ ନିର୍ମଳ ଜଳ । ପ୍ରତ୍ୟେକ ପରିବାରରେ ଏହା ଉପଲବ୍ଧ ହେବ । ସମଗ୍ର ମାନବଜାତିର ତୃଷା ମେଣ୍ଟିବ । ଇତିହାସର ଅଧ୍ୟୟନ ଓ ଗବେଷଣା ଫଳରେ ସେମାନଙ୍କୁ ମିଳିଛି ସୁଚର୍ଚ୍ଚିତ ବିପ୍ଳବର ବିଜ୍ଞାନ । ଠିକ୍ ୟୁକ୍ଲିଡ଼ଙ୍କ ଜ୍ୟାମିତି ପରି । ମାର୍କ୍ସ ମଧ୍ୟ ଭବିଷ୍ୟବାଣୀ କରିଥିଲେ - ପୃଥିବୀର ବିଭିନ୍ନ ଅଞ୍ଚଳରେ କିପରି ବିପ୍ଳବମାନ ସଂଗଠିତ ହେବ । ଯଦିଓ ଏହି ବାର୍ତ୍ତା ଠିକ୍ ସଫଳ ହୋଇନାହିଁ । ହିସାବ ନିକାଶରେ ତ୍ରୁଟି ଥାଇପାରେ । ଏପରି ଜ୍ୟୋତିଷ ଶାସ୍ତ୍ରରେ ତ ଭୁଲ ଥାଏ । ତା ବୋଲି ଜ୍ୟୋତିଷ ବିଜ୍ଞାନକୁ କୌଣସି ଫଳାଫଳ ପାଇଁ ଭୁଲ ବୋଲି କହିପାରିବା ? ମୃତ୍ୟୁ ଡାକରାକୁ କେହି ଉପେକ୍ଷା କରିପାରେ ନାହିଁ । ବିପ୍ଳବ ମାର୍ଗ ମଧ୍ୟ ସେହିପରି । ସୁତରାଂ ମଣିଷ ଅବସ୍ଥା ଚକ୍ରରେ ଯେତିକି ପାରିବ ଏହା ସହ ସହଯୋଗ କରିବ, ସାହାଯ୍ୟ କରିବ ।

କିଶୋରୀଲାଲ୍ ଭାଇ ଏହି ପୁସ୍ତିକାଟିରେ ଦର୍ଶାଇଛନ୍ତି ଯେ ଗାନ୍ଧିବାଦୀ ଆଦର୍ଶ ଏହି ଚରମ ମତବାଦ ସହିତ ଖାପ ଖୁଆଇ ପାରିବ ନାହିଁ ।

## କଠୋର ବିଦ୍ୟାର୍ଥୀ ଜୀବନ ଏବଂ ସ୍ୱାଧୀନଚିନ୍ତା

ସେମାନେ କହନ୍ତି- ରାମଙ୍କ ପୂର୍ବରୁ ବାଲ୍ମିକୀ ରାମାୟଣ ରଚନା କରିସାରିଥିଲେ । ରାମ ଏହି ଗ୍ରନ୍ଥର ପ୍ରତ୍ୟେକ ଶବ୍ଦ ସହ ତାଳ ଦେଇ ଚାଲିଥିଲେ । ଏହା ସତ୍ତ୍ୱେ ସେ କେତେବେଳେ ନ୍ୟାୟ ପ୍ରଦାନରେ କୁଣ୍ଠା ପ୍ରକାଶ କରିନାହାନ୍ତି । ସେ ଅବଶ୍ୟ ଗ୍ରନ୍ଥର ସହାୟତା ନେଇଛନ୍ତି । ସେପ୍ରକାର କାର୍ଯ୍ୟ ମଧ୍ୟ କରିଛନ୍ତି । ପରିଣତି ସଂପର୍କରେ ଆଗରୁ ମଧ୍ୟ କୁହାଯାଇଛି । ସାମ୍ୟବାଦୀମାନଙ୍କ ସଂପର୍କରେ ଠିକ୍ ସେଇ କଥା କୁହାଯାଇପାରେ । ଲେନିନ୍ ମାର୍କ୍ସଙ୍କ ବକ୍ତବ୍ୟ ଅନୁସାରେ କାର୍ଯ୍ୟ କରିଛନ୍ତି । ଆମେମାନେ ଠିକ୍ ସେହିପରି ତାଙ୍କୁ ଅନୁସରଣ କରିବା ଏବଂ ଆମର ଲକ୍ଷ୍ୟ ସ୍ଥଳରେ ପହଞ୍ଚିପାରିବା । ଯଦି କୌଣସିଠାରେ ମାର୍କ୍ସଙ୍କ ବାଣୀ ଓ ଲେନିନ୍‌ଙ୍କର କାର୍ଯ୍ୟାବଳୀ ମଧ୍ୟରେ ବ୍ୟତିକ୍ରମ ଦେଖାଯାଏ- ସାମ୍ୟବାଦୀ ପଣ୍ଡିତମାନଙ୍କୁ ଆଉ ଟିକିଏ ପରିଶ୍ରମ

ପରି ପ୍ରମାଣ କରିବାକୁ ପଡ଼ିବ ଯେ, ବାସ୍ତବ କ୍ଷେତ୍ରରେ କୌଣସି ତ୍ରୁଟି ନାହିଁ । ଏହା ବିଶେଷ କଠିନ କାମ ନୁହେଁ । ଆମର ସୁପରିଚିତ ପ୍ରବାଦବାକ୍ୟ ଅଛି ଯେ ଶ୍ରୁତି ଶାସ୍ତ୍ର ସହ ସ୍ମୃତିଶାସ୍ତ୍ର ମିଳିବା ଉଚିତ । ଯଦି ନିୟମ ସ୍ପଷ୍ଟ ଅଛି, ତେବେ ଏଠି ଅର୍ଥ ଅର୍ଥାନ୍ତରର ଆବଶ୍ୟକତା ଅଛି । ଦେଖିବାକୁ ହେବ ପୂର୍ବୋକ୍ତ ରଚନା ଯୁକ୍ତିଯୁକ୍ତ । ସେଇଆ କଲେ ବାଟ ପରିଷ୍କାର ରହିବ ।

ଗାନ୍ଧୀବାଦୀ ଆଦର୍ଶ ଏହାଠାରୁ ସ୍ୱତନ୍ତ୍ର ମତ ଘୋଷଣା କରେ । ସାମ୍ୟବାଦ ଯଦି ଗ୍ରାନାଇଟର କଠିନ ସ୍ତମ୍ଭ ହୁଏ ଗାନ୍ଧିବାଦ ଚିର ପରିବର୍ତ୍ତନଶୀଳ ଏକ ଏମୋଇବା । ଆମେ ଯଦି ଚିନ୍ତା ସବୁକୁ ପରୀକ୍ଷା କରିବା, ଦେଖିବାକୁ ପାଇବା ଏହା ସବୁବେଳେ ବିକାଶମୁଖୀ । ଯଦି କେଉଁଠି ପରବର୍ତ୍ତୀ ବିଚାରରେ ବିରୋଧ ଦେଖାଦିଏ, ତା'ହେଲେ ବୁଝାମଣା ପରିବର୍ତ୍ତେ ସେଇଟିକୁ ଠିକ୍ ବୋଲି ଗ୍ରହଣ କରିନେବାକୁ ହେବ । ପୂର୍ବୋକ୍ତ ବିଚାରକୁ ତ୍ୟାଗ କରିବାକୁ ହେବ । ତାଙ୍କର ବଡ଼ ବଡ଼ ଯୁଦ୍ଧରେ କୌଣସି ପୂର୍ବ ନିର୍ଦ୍ଧାରିତ ଯୋଜନା ନଥିଲା । କୌଣସି କୌଶଳ ନଥିଲା ଏବଂ କୌଣସି ନିର୍ଦ୍ଧାରିତ ବ୍ୟବସ୍ଥା ନଥିଲା । ସେ କେବଳ କହୁଥିଲେ ଗୋଟିଏ ପାଦ ମୋ ପାଇଁ ଯଥେଷ୍ଟ । ଭଗବାନ କାହିଁକି ମୋତେ ଦୁଇଟି ପାଦ ଦେଖାଇବେ ? ତାଙ୍କର ଶେଷ କଥାଗୁଡ଼ିକ ଉପରେ ବିଶେଷ ଗୁରୁତ୍ୱ ଦେବାକୁ ଚାହୁଁନଥିଲେ । ତାଙ୍କର ଉତ୍ତର ଥିଲା- 'ସବୁବେଳେ ହାକିମାତି କଥା ଛାଡ଼ । ନିଜର ବୁଦ୍ଧି ପ୍ରୟୋଗ କର । ମୁଁ ନିକଟରେ ଅଛି, ମୋତେ ପଚାର । ସମସ୍ତେ ଚିନ୍ତା କର ଏବଂ ନିଜେ ନିଜ ବାଟ ଖୋଜ ।' ସେଥିପାଇଁ ତାଙ୍କର ପ୍ରିୟ ଭକ୍ତମାନଙ୍କ ମଧ୍ୟରେ ଭାବର ଏକମତ ନଥିଲା । ତାଙ୍କର ଜଣେ ସମାଲୋଚକ ମଜାରେ କହିଲେ- 'ଗାନ୍ଧୀ ଜଣେ ଗୀତାର ଭକ୍ତ । ସେହିପରି ତାଙ୍କର ସହଯୋଗୀମାନେ ସମସ୍ତେ ଗୀତା ଉପରେ କିଛି ନା କିଛି ଲେଖିଛନ୍ତି । ପ୍ରତ୍ୟେକ ଲେଖାର ରୀତି ସ୍ୱତନ୍ତ୍ର ।' ଆମେ ଏହି ବ୍ୟଙ୍ଗଟିକୁ ଭୁଲିଯାଇପାରିବା, କାରଣ ଗୀତାର ଅସରନ୍ତି ବିଚାର ଏହାହିଁ ପ୍ରମାଣ କରେ । ସୁତରାଂ କଥାଟି ହେଲା - ଜୀବନର ସମସ୍ୟା ଗୋଟିଏ ନୁହେଁ । ସେହିପରି ସର୍ବୋଦୟର ଭିତ୍ତି ଖଦି ହେଲେବି ଗାନ୍ଧିଜୀଙ୍କୁ ପ୍ରସ୍ତାବ ଦେଇଥିଲେ - 'ତାଙ୍କର ଧାରଣା ସବୁକୁ ଏକ ବିଧିବଦ୍ଧ ଓ ଔପଚାରିକ ବିଚାରମାଳାରେ ସେ ଲିପିବଦ୍ଧ କରିଯିବା ଉଚିତ । କିନ୍ତୁ ଗାନ୍ଧିଜୀ ଉତ୍ତର ଦେଲେ - ଗୋଟିଏ ବିଷୟ ପାଇଁ ମୋର ସମୟ ନାହିଁ । ଅନେକ ବିଷୟ ପାଇଁ ମୁଁ ପରୀକ୍ଷା ନିରୀକ୍ଷା ଚଳାଇଛି । ତେଣୁ ବିଚାରମାଳା ଧୀରେ ବିକଶିତ ହେବ । ଯଦି ଏହା ହୋଇପାରେ, ତାହାଭଲ ।' ତେଣୁ ତାଙ୍କ କଥା ଠିକ୍ । କିନ୍ତୁ ତାଙ୍କର ଉତ୍ତର ମୋତେ ଅଲଗା ପ୍ରକାର ଲାଗିଲା । ଗୋଟିଏ ସୁଲିଖିତ ବିଚାରମାଳାର ପ୍ରତ୍ୟୁତ୍ତରରେ ଏକ ବିପରୀତ ମତ ସୃଷ୍ଟି ହୋଇପାରେ । କିନ୍ତୁ ଗୋଟିଏ ଦେଶର ସଶସ୍ତ୍ରୀକରଣ ନୀତିରେ ଅନ୍ୟମାନଙ୍କୁ ସେପରି ନକରିବାକୁ କୁହାଯାଇପାରିବ ନାହିଁ । ଫଳରେ ସମସ୍ୟା ବଢ଼ିବା ସୁନିଶ୍ଚିତ । ସେହିପରି ପାଣ୍ଡିତ୍ୟ ପ୍ରୟୋଗ କରି ବାକ୍ ଯୁଦ୍ଧ ଆରମ୍ଭ କରିଦେଲେ ଆମର ଚିନ୍ତାଧାରା ସ୍ପଷ୍ଟ ହେବନାହିଁ କି ପାର୍ଥକ୍ୟ କମିଯିବ ନାହିଁ, ବରଂ ଅଧିକ ବିଭ୍ରାଟ ସୃଷ୍ଟିହେବ ।

ସେଥିପାଇଁ ଖୋଲାମନରେ କାମ କରବା ଉଚିତ । ଖାଲି ବାଜା ବଜାଇ ପଶୁ ତଡ଼ିବା ଭଳି ଜଟିଳ ପନ୍ଥା ଗ୍ରହଣ କଲେ କୌଣସି ଲାଭ ନାହିଁ । ଏପରି କଲେ ବିଭେଦ ଓ ବିଶୃଙ୍ଖଳା ସୃଷ୍ଟି ହେବ । ବୁଦ୍ଧଙ୍କ ସମୟରେ ଏହା ହିଁ ହୋଇଥିଲା । ତାଙ୍କର ଅନୁଗାମୀମାନେ ହୁଏତ ଦଶଭାଗରେ ବିଭକ୍ତ ହୋଇଯିବେ ଏବଂ ସମସ୍ତେ ନିଜ ନିଜ ଅଲଗା ବାଟରେ ଚାଲିବେ । ଏହାକୁ ରୋକାଯାଇ ପାରିବ । ତାର ବାଟ ହେଲା ଗାନ୍ଧିଙ୍କ ବାଟ । ପ୍ରତ୍ୟେକ ନିଜ ନିଜର ସାମର୍ଥ୍ୟ ଓ ଦାୟିତ୍ୱ ଅନୁସାରେ ନିଜ ପାଇଁ କାମ କରିବେ ।

## ଗାନ୍ଧିଜୀଙ୍କ ତିନୋଟି ମୌଳିକନୀତି

କିଶୋରୀଲାଲ୍ ଗାନ୍ଧିଜୀଙ୍କ ଚିନ୍ତନକୁ ନିର୍ଦ୍ଦିଷ୍ଟ ରୂପ ଦେବାକୁ ଚେଷ୍ଟା କରିଛନ୍ତି । ସେଥିରେ ସ୍ୱାଧୀନତା ଓ ନମନୀୟତା ରହିଛି । ସେ ଏହାକୁ ତିନୋଟି ମୌଳିକ ନୀତି ଉପରେ ଗଢ଼ିବାକୁ ଚାହୁଁଛନ୍ତି । ୧. ବର୍ଣ୍ଣ ବ୍ୟବସ୍ଥା (principle about vocation for living), ୨. ନ୍ୟାସୀ ତତ୍ତ୍ୱ (trusteeship), ୩. ବିକେନ୍ଦ୍ରୀକରଣ (decentralisation)

୧. ଗାନ୍ଧିଜୀ ପାରଂପରିକ ବର୍ଣ୍ଣ ବ୍ୟବସ୍ଥା ଧାରଣା ପ୍ରତି ବିଶେଷ ଆଗ୍ରହୀ ଥିଲେ (ସାମାଜିକ-ଅର୍ଥନୈତିକ ବ୍ୟବସ୍ଥା) । କିନ୍ତୁ ସେ ଏଥିରେ ସଂପୂର୍ଣ୍ଣ ନୂଆ ଅର୍ଥ ଓ ଭାବନା ଆରୋପ କରିଥିଲେ । ନୂଆ କଥାଟି ହେଲା- ଏହା ପ୍ରାଚୀନ ଭାବନା ଓ ଉଦ୍ଦେଶ୍ୟ ଆଧାରରେ ପରିକଳ୍ପିତ ହୋଇଥିଲା । ମୋ ମତରେ ଏହାହିଁ ହେଉଛି ଅହିଂସାର ପ୍ରୟୋଗାତ୍ମକ ପରୀକ୍ଷଣ । ପୁରୁଣା ଶବ୍ଦ ଓ ଧାରଣା, ଯାହା ବହୁ କାଳ ଧରି ଗୃହୀତ ଓ ସମ୍ମାନିତ ବିଷୟ ଥିଲା, ତାହାକୁ ପ୍ରତ୍ୟାଖ୍ୟାନ କରି ଅହିଂସାକୁ ଜୀବନ୍ୟାସ ଦିଆଯାଇ ବ୍ୟାପକ ଅର୍ଥରେ ମଣ୍ଡିତ କରାଗଲା । ସଂଶ୍ଳେଷଣ ହେଉଛି ଭାରତୀୟ ମାନସର ମୌଳିକ ଚାରିତ୍ରିକ ବୈଶିଷ୍ଟ୍ୟ । ସେଥିରୁ ଜନ୍ମ ନେଇଛି ଏହି ଅହିଂସା କୌଶଳ । ଏହା ଅତି କୋମଳ ହୋଇଥିବାରୁ ଶବ୍ଦଟିରେ ଭରିଥିବା ନୂତନ ଅର୍ଥ ହଠାତ୍ ଜଣାପଡ଼ିବ ନାହିଁ । ମନେହେବ ପୁରୁଣା ଅର୍ଥକୁ ଟିକେ ମାଜି ମୁଜି ଦିଆଯାଇଛି । ଗୀତା ଏପରି ଶବ୍ଦର ବିସ୍ତୃତ ପ୍ରୟୋଗ ସୂଚାଇ ଦିଏ, ଯଥା ଯଜ୍ଞ ଇତ୍ୟାଦି । ବିକୃତ କଲେ ନିଶ୍ଚୟ କିଛି ପରିମାଣରେ ବିପଦ ଅଛି । ଯେତେବେଳେ ଏପରି ଘଟେ, ସେତେବେଳେ ଅସତ୍ୟକୁ ଗ୍ରହଣ କରିବା ଭଳି ହୁଏ । ଏହା ଅହିଂସାଠାରୁ ଅଲଗା । କହିବାକୁ ଗଲେ, ନୂତନ ଅର୍ଥ ଗ୍ରହଣ ମନେହେବ ଗାଈ ଦୁହିଁଲା ଭଳି କୋମଳ ଓ ସମ୍ମାନିତ ବ୍ୟାପାର । ଗାନ୍ଧିଜୀଙ୍କ ଜନ୍ମ ଓ ପାଳନ ଭାରତୀୟ ସଂସ୍କୃତି କୋଳରେ ହୋଇଥିଲା । ସେଇ ସଂସ୍କୃତି ସହ ଘନିଷ୍ଠ ଭାବେ ଜଡ଼ିତ ଲୋକମାନଙ୍କୁ ସେ ଉଦ୍‌ବୋଧନ ଦେଇଥିଲେ । ମୁଁ ମନେକରେ ସେଥିପାଇଁ ସେ ବର୍ଣ୍ଣ ବ୍ୟବସ୍ଥାକୁ ଆଦରି ନେଲେ । ଯଦି ଗାନ୍ଧି ଅନ୍ୟ କେଉଁ ସମାଜରେ ଜନ୍ମ ହୋଇଥାନ୍ତେ, ତା'ହେଲେ ବର୍ଣ୍ଣର ଧାରଣା ଅନ୍ୟ ପ୍ରକାର ହୋଇଥାନ୍ତା ଏବଂ ଅହିଂସା ସାମାଜିକ ବ୍ୟବସ୍ଥାର ଅତ୍ୟାବଶ୍ୟକ ଅଂଶ ବିଶେଷ ପାଲଟି ଯାଇଥାନ୍ତା । ଗଭୀର ବିଶ୍ୱାସର ସହ କୁହାଯାଇପାରେ ଯେ ଅନ୍ତର୍ନିହିତ ମୂଳତତ୍ତ୍ୱଟିକୁ ନିଶ୍ଚିତ ଭାବେ ଗ୍ରହଣ କରିଥାନ୍ତେ । ହୁଏତ

ତାର ଭାଷା ଅଲଗା ହୋଇଥାନ୍ତା । ମୁଁ ଯାହା କହିବାକୁ ଚାହେଁ, ତାହାହେଲା ଯେଉଁମାନେ ବର୍ଣ୍ଣ ଓ ବର୍ଣ୍ଣବ୍ୟବସ୍ଥାର ପ୍ରତିବାଦ କରିଛନ୍ତି, ସେମାନେ ଗାନ୍ଧିଜୀଙ୍କର ଏପରି ବ୍ୟବହାରରେ ଚମକିବାର କୌଣସି କାରଣ ନାହିଁ । ଆମେ ଶବ୍ଦର ବ୍ୟବହାର ସଂପର୍କରେ ବିଚଳିତ ନୋହୁଁ । ତାର ପ୍ରସଙ୍ଗ ସଂପର୍କରେ ଚିନ୍ତିତ ।

(କ) ସବୁ କାମ ପାଇଁ ସମାନ ଦରମା (ଖ) ପ୍ରତିଦ୍ୱନ୍ଦ୍ୱିତାର ଅନୁପସ୍ଥିତି (ଗ) ଶିକ୍ଷା ବ୍ୟବସ୍ଥାର ସଂପୂର୍ଣ୍ଣ ସଦୁପଯୋଗ, ଯେଉଁଥିରେ ଲୋକମାନଙ୍କର ବଂଶଗତ କାର୍ଯ୍ୟଦକ୍ଷତା ଯଥାର୍ଥ ସ୍ଥାନ ଲାଭ କରିବା –ବର୍ଣ୍ଣ ବ୍ୟବସ୍ଥା ମୂଳରେ ରହିଛି ଏଇ ତିନୋଟି । ଆମ ମତରେ ଏକ ଅହିଂସା ସାମାଜିକ ସଂଗଠନରେ ଏସବୁ ଏକାନ୍ତ ଆବଶ୍ୟକ ।

୨. ନ୍ୟାସ ବ୍ୟବସ୍ଥା ଅନେକଙ୍କ ନିକଟରେ ଅପ୍ରିୟ । ବର୍ଣ୍ଣ ବ୍ୟବସ୍ଥାର ମୂଳଭିତ୍ତି ହେଉଛି ସଠିକ୍ ଧାରଣା ଏବଂ ସୁଚିନ୍ତିତ ଶୃଙ୍ଖଳା । ନ୍ୟାସ ବ୍ୟବସ୍ଥା ସଂପର୍କରେ ଠିକ୍ ଏହିପରି କୁହାଯାଇ ନପାରେ । ଶବ୍ଦଟିର ବ୍ୟବହାର ଓ ଅପବ୍ୟବହାର ଏକ ସଙ୍ଗରେ ସଂଭବ ହୋଇପାରେ । କିନ୍ତୁ ଆଇନରେ ଏହାର ମହତ ଉଦ୍ଦେଶ୍ୟ ସୁବିନ୍ୟସ୍ତ । ଗାନ୍ଧି ଜଣେ ଆଇନର ଛାତ୍ର ଥିବାରୁ ଶବ୍ଦଟି ତାଙ୍କୁ ବିଶେଷ ଆକୃଷ୍ଟ କରିଛି । ପୁଣି ସେ ସତ୍ୟର ଉପାସକ ହୋଇଥିବାରୁ ଶବ୍ଦଟିର ଅର୍ଥ ଓ ବ୍ୟବହାର କ୍ଷେତ୍ରରେ ତାର ମହତ୍ତର ଦିଗଟିକୁ ଦେଖିଛନ୍ତି । 'ମୁଁ ଆଇନର ଛାତ୍ର ହୋଇ ନଥିବାରୁ ଏହା ମୋତେ ବିଶେଷ ଆକର୍ଷିତ କରିନାହିଁ କି ଟାଣି ଧରିନାହିଁ । ତଥାପି ମୋର ବୁଝାମଣାରେ ତାହା ବାଧକ ସାଜିନାହିଁ ।' କିମ୍ବା ଅବବୋଧରେ ଗାନ୍ଧିଜୀ ଚିନ୍ତନର ପରିପ୍ରକାଶ ଅଟକି ଯାଇନାହିଁ । ଗୀତାର କେତେକ ଗୁଢ଼ ଶବ୍ଦ ଯଥା- ଅପରିଗ୍ରହ ସମଭାବ ଇତ୍ୟାଦି ଗାନ୍ଧିମନକୁ ଗଭୀରଭାବେ ଆବୋରି ବସିଛି । ଫଳରେ ସାଧାରଣ ଲୋକଙ୍କ ଧ୍ୟାନରେ ବସିଲାବେଳେ ସେ ଆଇନ ଶାସ୍ତ୍ରରୁ ନ୍ୟାସ ଶବ୍ଦର ସାହାଯ୍ୟ ନେଇଛନ୍ତି । ଅପରିଗ୍ରହକୁ ବୁଝାଇବା ବେଳେ ସେ ସମାଧାନର ସୂତ୍ର ଖୋଜି ପାଇଛନ୍ତି । ସଂକ୍ଷେପରେ ଗାନ୍ଧିଜୀ ସମାଜର ଅବସ୍ଥା ପାଇଁ ନୁହେଁ ପ୍ରତ୍ୟେକ ବ୍ୟବସ୍ଥା ପାଇଁ ଅପରିଗ୍ରହର ପ୍ରାୟୋଗିକ ବ୍ୟବହାର ଏବଂ ନ୍ୟାସର କ୍ଷମତା ବିଷୟ ବୁଝାଇ ଦେଇଛନ୍ତି । କିଶୋରୀଲାଲ୍ ସାବଲୀଳ ଭାବରେ ତାହା ବର୍ଣ୍ଣନା କରିଛନ୍ତି । ଜଣେ ସାଧାରଣ ମଣିଷର ଏହା ସହଜ ବୋଧଗମ୍ୟ ହୋଇପାରିବ । ମୁଁ ଭାବେ, ଏହାକୁ ପଢ଼ିଲା ପରେ ଭୁଲ ବୁଝାମଣାର ଆଉ କୌଣସି ଦିଗ ରହିବ ନାହିଁ ।

ଧରାଯାଉ, ସମାଜରୁ ସଂପତ୍ତିର ଅସମାନତା ହଟିଗଲା । କିନ୍ତୁ ବୌଦ୍ଧିକ ଓ ଶାରୀରିକ ଅସମାନତାକୁ ସଂପୂର୍ଣ୍ଣଭାବେ କିପରି ଦୂରେଇ ଦେଇପାରିବ ? ବର୍ତ୍ତମାନ ଅନୁମାନ କରାଯାଉ, ଶିକ୍ଷା ଓ ନିୟମାନୁବଦ୍ଧତା ବଳରେ ଉପରୋକ୍ତ ଅସମାନତାର ହ୍ରାସ ସମ୍ଭବ ହେଲା । ତଥାପି ଗୋଟିଏ ଆଦର୍ଶ ରାଷ୍ଟ୍ରରେ ଏହାର ସଂପୂର୍ଣ୍ଣ ନିରାକରଣ ଆମେ କଳ୍ପନା କରି ପାରିବା ନାହିଁ । ଉପସଂହାରରେ ଆମେ ଏତିକି କହିପରିବା ଯେ ଜଣେ ବ୍ୟକ୍ତିକୁ ମିଳିଥିବା ପ୍ରତିଭା, ଶାରୀରିକ ଶକ୍ତି, ସଂପତ୍ତି, ଅନ୍ୟାନ୍ୟ ସାମର୍ଥ୍ୟର ସେ ଜଣେ ନ୍ୟାସୀ ମାତ୍ର । ପୃଥିବୀର କଲ୍ୟାଣ ପାଇଁ

ସେସବୁ ଉଦ୍ଦିଷ୍ଟ । ଏହାହିଁ ନ୍ୟାସ ତତ୍ତ୍ୱର ଆଦର୍ଶ ଧାରଣା । କିନ୍ତୁ ସ୍ୱାର୍ଥପର ଲୋକମାନେ ଏହାକୁ ଏପରି କଦର୍ଥ କରି ଦେଇଛନ୍ତି ଯେ ତାର ପୁରାତନ ପବିତ୍ରତା ପୁନଃସ୍ଥାପନ ଅସମ୍ଭବ । ମୁଁ ସେଥିପାଇଁ ଆଉ ଗୋଟିଏ ଶବ୍ଦ ଖୋଜୁଛି । ତାହା ହେଉଛି– ବିଶ୍ୱସ୍ତବୃତ୍ତି । ଅନ୍ୟ ଅର୍ଥରେ ଆସ୍ଥା ଭାବନା । ଏହି ଶବ୍ଦ ସହ କୌଣସି ଅପ୍ରାସଂଗିକ ସହଯୋଗ ସଂଭବ ନୁହେଁ । ନିୟମିତ କେହି କାହା ଉପରେ ନିର୍ଭରଶୀଳ ନୁହଁନ୍ତି । ଏହାକୁ ଆମେ ଆତ୍ମନିର୍ଭରଶୀଳତାର ପରାମର୍ଶଦାତା ରୂପେ ଗ୍ରହଣ କରିପାରିବା । କିନ୍ତୁ ସାମାଜିକ ଜୀବନ ପରସ୍ପର ଆସ୍ଥା ଉପରେ ନିର୍ଭର କରେ । ତେଣୁ ଏହାକୁ ନିଶ୍ଚିତ ଏକ ନିୟମ ବୋଲି କହିପାରିବା ନାହିଁ । ନହେଲେ ଦୁନିଆରେ କେହି କାହା ଉପରେ ଆସ୍ଥା ରଖିବେ ନାହିଁ । ଏପରି ଆଚରଣକୁ ନିୟମାନୁସାରୀ କରିଦେଲେ ପୃଥିବୀରେ ନର୍କ ପ୍ରତିଷ୍ଠା ହୋଇଯିବ । ପିତାମାତାମାନେ ତାଙ୍କ ସନ୍ତାନମାନଙ୍କ ଉପରେ ଆସ୍ଥା ସ୍ଥାପନ କରନ୍ତି । ସେହିପରି ସନ୍ତାନମାନେ ପିତାମାତାଙ୍କ ଉପରେ, ପଡ଼ିଶାମାନେ ଅନ୍ୟମାନଙ୍କ ଉପରେ । ଏହା ଯେପରି ହେବା କଥା ସେପରି ହୁଏ । ଯଦି ପରସ୍ପର ଆସ୍ଥା ଉପରେ କାମ କରିନପାରିବା ଏବଂ ସବୁବେଳେ ତାହା ବିପଦପୂର୍ଣ୍ଣ ବୋଲି ଭାବିବା, ତା'ହେଲେ ଅନୁମାନ କରିନେବା ଯେ ଆମେ ଅମଣିଷ ସ୍ତରରେ ଅଛେ । ପରସ୍ପର ଆସ୍ଥା ଭାଜନ ହେବା କେବଳ ଉନ୍ନତ ଶିକ୍ଷା ପ୍ରଣାଳୀ ଦ୍ୱାରା ସଂଭବ । ଏହା ନକରି ଯଦି ସମାଜକୁ ଗୋଟିଏ ଯାନ୍ତ୍ରିକ ପ୍ରଥାରେ ପରିଣତ କରିଦେବା, ସେଠାରେ ପରସ୍ପର ଆସ୍ଥାର କୌଣସି ସ୍ଥାନ ନାହିଁ । ଫଳରେ ଏହା ବୌଦ୍ଧିକ ଆଳସ୍ୟର ରୂପ ନେବ ।

ଆସ୍ଥା ଉପରେ ଗଢ଼ି ଉଠିଥିବା ସାମାଜିକ ବ୍ୟବସ୍ଥାରେ ପ୍ରତ୍ୟେକ ବ୍ୟକ୍ତି ବିବିଧ ଓ ଅଦ୍‌ଭୁତ ସାମର୍ଥ୍ୟର ଅଧିକାରୀ ହୋଇଥାଏ । ଏହି ଧାରଣା ଗୋଟିଏ ସଂସ୍କୃତ ଶବ୍ଦ 'ଲୋକ ସଂଗ୍ରହ' ମଧ୍ୟରେ ପ୍ରକାଶିତ । ଅର୍ଥାତ ପ୍ରତ୍ୟେକ ବ୍ୟକ୍ତିର ସହାବସ୍ଥାନ ବା ସମସ୍ତଙ୍କର ସାମାଜିକ ମଙ୍ଗଳ । ଜଣଙ୍କର ସାମର୍ଥ୍ୟର ସଦ୍‌ବ୍ୟବହାର ହେଉଛି, ସେଇ ଆସ୍ଥା ଭାବନା ବ୍ୟକ୍ତିଗତ ଅପରିଗ୍ରହର ଅନ୍ତର୍ନିହିତ ସ୍ୱର । 'ଲୋକ ସଂଗ୍ରହ'ର ଏହାହିଁ ହେଉଛି ମୌଳିକ ନୀତି । ଆମେ ନ୍ୟାସୀ ତତ୍ତ୍ୱକୁ ଏକ ଶବ୍ଦ ରୂପେ ଗ୍ରହଣ କରିପାରୁ, କିନ୍ତୁ ପାରସ୍ପରିକ ଆସ୍ଥା ନୀତିକୁ ଉପେକ୍ଷା କରିପାରିବା ନାହିଁ ।

୩. ମାତ୍ର ବିକେନ୍ଦ୍ରୀକରଣ କ୍ଷେତ୍ରରେ ଏହା ଅଲଗା । ଶବ୍ଦଟି ଅଭିନବ ହୋଇଥିବାରୁ ଏହାର ଭଲ କି ଖରାପ ସଜ୍ଞା ନାହିଁ । ଶବ୍ଦ ଓ ଅର୍ଥ ଏବଂ ଏହା ପଛରେ ଥିବା ଧାରଣା, ସବୁ ନୂଆ । କିନ୍ତୁ ଜଣେ ପ୍ରଶ୍ନ କରିପାରେ – ଯନ୍ତ୍ରଯୁଗ ପୂର୍ବରୁ କ'ଣ ବିକେନ୍ଦ୍ରିତ ବ୍ୟବସ୍ଥା ନଥିଲା ? ଏହା ଭିତରେ ନୂଆ କ'ଣ ଅଛି ? କଥାଟି ହେଲା– ଗାଁ ଗହଳରେ ଥିବା ଗ୍ରାମୀଣ ଶିଳ୍ପ ଛୋଟ ଛୋଟ କାରାଖାନା ଭିତରେ ସୀମିତ ଥିଲା । ଏଥିରେ ବିକେନ୍ଦ୍ରୀକରଣର ଆବଶ୍ୟକତା ନଥିଲା । ବିକେନ୍ଦ୍ରୀକରଣ ମୂଳରେ ଅଛି ବହୁ ଗ୍ରାମୀଣ ଶିଳ୍ପର ବ୍ୟାପକ କାର୍ଯ୍ୟଧାରା । ଏଭଳି ଧାରଣାର ଅଭାବରେ ଛୋଟ ଛୋଟ ଶିଳ୍ପ ସଂସ୍ଥା ବିକ୍ଷିପ୍ତ ଅବସ୍ଥାରେ ଥିଲା । ଯନ୍ତ୍ରଯୁଗ ପୂର୍ବରୁ ତାହା ବହୁ

ସଂଖ୍ୟାରେ ଥିଲା । କିନ୍ତୁ ଯନ୍ତ୍ରର ପ୍ରବଳ ପ୍ରବାହରେ ସେ ସବୁ ନିଶ୍ଚିହ୍ନ ହୋଇଗଲା । ବିକେନ୍ଦ୍ରୀକରଣ (ଅର୍ଥାତ୍ ସୁଚତୁର ଅଣ କେନ୍ଦ୍ରୀକରଣ) ବର୍ତ୍ତମାନ ସୁଦୃଢ଼ ମୂଳଭିତ୍ତି ଉପରେ ପ୍ରତିଷ୍ଠିତ । ଏହାକୁ ସହଜରେ ଏଡ଼ାଇ ଦେଇ ହେବନାହିଁ । ବରଂ ଯନ୍ତ୍ର ଏ ଯୁଗକୁ ଭାଙ୍ଗିରୁଜି ଛାରଖାର କରିଦେବ । ବର୍ତ୍ତମାନ ଯନ୍ତ୍ରଯୁଗର ନାଁକୁ ଛାଡ଼ିଦେଲେ ସଂପୂର୍ଣ୍ଣ ରୂପେ ଏହା ଯନ୍ତ୍ରପରି ନୁହେଁ । ମାତ୍ର ସାମ୍ୟବାଦୀମାନେ ଏକ ସୁନିୟନ୍ତ୍ରିତ ଯନ୍ତ୍ରଯୁଗ ଚାହାନ୍ତି । ସବୁ ଅସ୍ତ୍ର ଶସ୍ତ୍ର ପରି ଯନ୍ତ୍ରଗୁଡ଼ିକ ମଣିଷ ଦ୍ୱାରା ଉଦ୍ଭାବିତ । ମାତ୍ର ସେସବୁ ଚିରକାଳ ଅଣ-ମଣିଷ । ତେଣୁ ସେମାନଙ୍କୁ ନିର୍ଦ୍ଦିଷ୍ଟ ସୀମା ଭିତରେ ମାନବଧର୍ମୀ କରାଯାଇପାରେ । ଅନ୍ୟ ପକ୍ଷରେ ସେମାନେ ନିଜ ନିଜର ପ୍ରଭୁତ୍ୱ ଦେଖାନ୍ତି ଏବଂ କାଳକ୍ରମେ ମଣିଷକୁ ଦାସ କରିଦିଅନ୍ତି । ଏଠାରେ ଯେଉଁ ଅସ୍ତ୍ର-ଶସ୍ତ୍ରର କଥା ବୁଝାଯାଉଛି, ସେଗୁଡ଼ିକ କେବଳ ଯୁଦ୍ଧ ପାଇଁ ଉଦ୍ଦିଷ୍ଟ । ମଣିଷର ଉପକାରରେ ଲାଗୁଥିବା ଜିନିଷ କଥା ଏଠାରେ କୁହାଯାଉନାହିଁ । ଉଦାହରଣ ସ୍ୱରୂପ- ଡାକ୍ତରମାନଙ୍କ ଛୁରୀ ଓ କଇଁଚି । ଏଠାରେ ଯେଉଁ ଯନ୍ତ୍ରମାନଙ୍କ କଥା କୁହାଯାଉଛି, ସେଗୁଡ଼ିକ ହେଲା- ବେକାରୀ, ଆଳସ୍ୟ, ବୌଦ୍ଧିକ ସ୍ଥାଣୁତା ସୃଷ୍ଟିକାରୀ ଯନ୍ତ୍ର । ଏଥିରେ ଉପକାରୀ ଜିନିଷ କିଛି ନାହିଁ ବା ମଣିଷ ସୁଲଭ ସ୍ପର୍ଶ ନାହିଁ । ଯେପରି ଆମ ହାତର ଗୋଟିଏ ଅଙ୍ଗ ଅସୁବିଧା ଭୋଗିଲେ ଅନ୍ୟ ଗୋଟିଏ ଅଙ୍ଗ ସାହାଯ୍ୟ କରିବାକୁ ଧାଇଁଯାଏ । ଉଦାହରଣ: ଚକଲଗା ଗାଡ଼ି । ଆମେ ବର୍ତ୍ତମାନ ଗୋଟିଏ କୂଅ ଖୋଳୁଛୁ । ଦିନ ପରେ ଦିନ ଦେଖୁଛୁ ଚକଗାଡ଼ିଟି କିପରି ଖୋଳା ମାଟିକୁ ବହିନେଉଛି । ଏତେବେଳେ ସେନାପତି ବାପଟଙ୍କ କଥା ମନେପଡୁଛି । ମୋ ଗାଡ଼ିର ଜୟ ହେଉ । ଚକଗାଡ଼ି ମଧ୍ୟ ଆମ ଯନ୍ତ୍ର ଯୁଗର ଉପହାର । ସେଥିପାଇଁ ଆମ ମତରେ ଯନ୍ତ୍ରଯୁଗ ଆଣିବ ବିକେନ୍ଦ୍ରୀକରଣ । ଆମେ ଯନ୍ତ୍ରର ସମସ୍ତ ଲାଭ ଉଠାଇ ସାରିଲାପରେ ତାକୁ ଭାଂଗି ଖଣ୍ଡଖଣ୍ଡ କରିଦେବୁ । ଏହା ସତ ଯେ ସେ ପର୍ଯ୍ୟନ୍ତ କିଛି ଭୁଶୁଡ଼ି ପଡ଼ିବ ନାହିଁ । ପୂର୍ବର ଅଣ-କୈନ୍ଦ୍ରିକ ଗ୍ରାମ୍ୟ ଶିଳ୍ପର ବିଭାଜନ କ୍ଷମତା ନଥିଲା କି ଯନ୍ତ୍ରଯୁଗର ସଂଯୋଗକାରୀ ସୁବିଧା ନଥିଲା । ଏହାହିଁ ଉଦ୍ଦେଶ୍ୟମୂଳକ ବିକେନ୍ଦ୍ରିତ ଶିଳ୍ପ ଏବଂ ପୁରୁଣା ଅଣ-କୈନ୍ଦ୍ରିକ ଶିଳ୍ପ ମଧ୍ୟରେ ପାର୍ଥକ୍ୟ । ତେଣୁ ଦୁଇଟିଯାକ ଶବ୍ଦରେ ଥିବା ଭାବନା ନୂଆ । ଏହିପରି ପ୍ରଭେଦ ଯଦି ମନକୁ ଆସେ ବିକେନ୍ଦ୍ରୀକରଣ ବିରୋଧି ସମସ୍ତ ଅଭିଯୋଗ ମୂଲ୍ୟହୀନ ହୋଇଯିବ । ଯେପରି ପଥରକୁ ଖଣ୍ଡାରେ କଟାଯାଉଛି ।

କିନ୍ତୁ ବିକେନ୍ଦ୍ରୀକରଣକୁ କେବଳ ଶିଳ୍ପ ଜଗତ ମଧ୍ୟରେ ଆବଦ୍ଧ କଲେ ଚଳିବ ନାହିଁ । ଏହି ବ୍ୟବସ୍ଥା ଦେଶର କର୍ତ୍ତାଙ୍କ ପାଇଁ ଯଥାର୍ଥ ଭାବେ ପ୍ରଯୁଜ୍ୟ । ଏପରିକି ଯେଉଁ ଚିନ୍ତାନାୟକମାନେ ଅହିଂସା-ସାମାଜିକ ବ୍ୟବସ୍ଥା ଗଢ଼ିବାରେ ବିଶ୍ୱାସୀ, ସେମାନେ ମଧ୍ୟ ଏଭଳି ଘଟଣା ଦେଖି ଦିଗହରା ହେବେ । ଶିଳ୍ପ ଜଗତର ବିକେନ୍ଦ୍ରୀକରଣକୁ ସେମାନେ ସମର୍ଥନ କରନ୍ତି । ଠିକ୍ ସେହି ସମୟରେ ଦେଶର ଶକ୍ତିଶାଳୀ କେନ୍ଦ୍ରୀୟ କର୍ତ୍ତୃତ୍ୱ ସପକ୍ଷରେ ଯୁକ୍ତିବାଢ଼ନ୍ତି । ଏପରିକି ସାମ୍ୟବାଦୀମାନେ ଦେଶର କର୍ତ୍ତୃତ୍ୱ ସବୁଦିନ ପାଇଁ ଚାହାନ୍ତିନାହିଁ । ସେମାନେ କହନ୍ତି-

ଲହୁଣୀରୁ ଘିଅ ବାହାରିଲା ପରେ ତାହା ଖରାତାତିରେ ତରଳିଯାଏ । ସେହିପରି କର୍ତ୍ତୃତ୍ୱ ଆପେଆପେ ବଦଳିଯାଏ । କିନ୍ତୁ ଅବସ୍ଥା ସଠିକ୍ ନହେଲା ପର୍ଯ୍ୟନ୍ତ ଏହା ସଂଭବ ନୁହେଁ । ଲୁହା ହାତୁଡ଼ି ବଳରେ ଟ୍ରଟ୍‌ସ୍କିଙ୍କ ମୁଣ୍ଡକୁ ଛେଚିଦେଲା ଭଳି ଶୀତଦିନର ଘିଅକୁ କଠିନ ହେବାକୁ ପଡ଼ିବ । ସବୁ ରାଜନୈତିକ ଦଳର ନେତାମାନେ ଆଦିକାଳରୁ ଆଜିପର୍ଯ୍ୟନ୍ତ ଦୃଢ଼ କେନ୍ଦ୍ର ସପକ୍ଷରେ ଯୁକ୍ତି ବାଢ଼ିଛନ୍ତି । କିନ୍ତୁ ଗାନ୍ଧିଜୀ ସବୁ ଅବସ୍ଥା ଓ ସବୁ ସମୟ ପାଇଁ ବିକେନ୍ଦ୍ରୀକରଣ ସପକ୍ଷରେ ମତ ଦେଇଛନ୍ତି । ଆରମ୍ଭରେ ଏହାର ଯେପରି ଆବଶ୍ୟକତା ଥିଲା, ଶେଷରେ ମଧ୍ୟ ସେହିପରି ରହିଛି । କିନ୍ତୁ ଆମର ବନ୍ଧୁମାନେ କହିପାରନ୍ତି- ଏସବୁ ବହୁ ପୁରାତନ । ତ୍ରେତୟା ବା ରାମ ରାଜ୍ୟର କାହାଣୀ । ଆଗାମୀ ସର୍ବୋଦୟ ବା ସ୍ୱପ୍ନରାଜ୍ୟର କଥା । ବର୍ତ୍ତମାନ ପାଇଁ ଏହାର ଆବଶ୍ୟକତା ନାହିଁ ।

## ଦୁଇ ମାତା (Two Mothers)

ଗାନ୍ଧିବାଦ ଓ ସାମ୍ୟବାଦ ମଧ୍ୟରେ ଯେତେଯାହା ପାର୍ଥକ୍ୟ ଥିଲେ ହେଁ କେତେକ ଦୃଷ୍ଟିରୁ ସେମାନଙ୍କ ମଧ୍ୟରେ ସମାନତା ରହିଛି । ସେଗୁଡ଼ିକ ମଧ୍ୟ ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଜଣେ ସଂସ୍କୃତ କବି ରାମ ଓ ରାବଣ ମଧ୍ୟରେ ଗୋଟିଏ ପଦ 'ରା'ର ସାଦୃଶ୍ୟ ଦେଖିଛନ୍ତି । ଆଦର୍ଶ ଦୃଷ୍ଟିରୁ ଦୁଇଟି ମଧ୍ୟରେ ଜନସାଧାରଣଙ୍କର ମଙ୍ଗଳ ପାଇଁ ଥିଲା ଯଥେଷ୍ଟ ଆଗ୍ରହ । ଦୁଇଟି ମଧ୍ୟରେ ନିଃସ୍ୱ ମଣିଷର ଉତ୍‌ଥାନ ପାଇଁ ରହିଛି ମୌଳିକ ମନୋବୃତ୍ତି । କାଳିଦାସ ଠାଏ କହିଛନ୍ତି - ଗୋଟିଏ ବସ୍ତୁର ଅନେକ ସୁଗୁଣ ଆଗରେ ଟିକିଏ କଳଙ୍କ କ୍ଷମଣୀୟ । ଏହାର ବିପରୀତ ମଧ୍ୟ ସମାନ ଭାବରେ ଗ୍ରହଣୀୟ । ଗୋଟିଏ ସୁଗୁଣ ଯଦି ଉଚ୍ଚକୋଟୀର ହୋଇଥାଏ - ତାହା ଅନେକ ଦୋଷକୁ ଗ୍ରାସ କରିଥାଏ । ଉତ୍ତମଗୁଣର ତୀବ୍ରତା ଏପରି ସୁଫଳ ପ୍ରଦାନ କରିଥାଏ । ସାରା ପୃଥିବୀରେ ଦରିଦ୍ର ଜନସାଧାରଣଙ୍କର ଅବସ୍ଥା ଏପରି ଦୟନୀୟ ଯେ ଯଦି କେହି ମାଆର ଗଭୀର ସ୍ନେହ, ହୃଦୟର ଉଦାରତା ଓ ସାହସିକତା ଦେଖାଇ କାହାକୁ ସନ୍ତାନ ରୂପେ ଗ୍ରହଣ କରିନିଏ, ସେ ତାହାର ଭଗବାନ ପାଲଟିଯାଏ । ହଁ ସେ ତାର ଉଚ୍ଚତର ଜୀବନର କାରଣ ନହୋଇପାରେ ।

ବୌଦ୍ଧଧର୍ମ ଓ ସାମ୍ୟବାଦ ଦୁହେଁ ଦରିଦ୍ର ଓ ଅତ୍ୟାଚାରିତର ଉନ୍ନତି ପାଇଁ ଅଭିପ୍ରେତ । ମା'ର ସ୍ନେହ ଭଳି ଏଥିରେ ଅଛି ପ୍ରୀତିର ଗଭୀରତା । ବେଳେବେଳେ ଏହା ମୋହଗ୍ରସ୍ତ ଭଳି ତତ୍‌କାଳ ଫଳଦାୟୀ ହୋଇଥାଏ । ମାତ୍ର ପିଲା ଉପରେ ମାଆର ଏହି ସ୍ନେହ ଦୂରନ୍ତ ପ୍ରଭାବ ପକାଇଥାଏ । ସାମ୍ୟବାଦ କ୍ଷେତ୍ରରେ ଏପରି ହୋଇଥାଏ । କେବଳ ମାଆର ସ୍ନେହ ଓ ମମତା ପିଲାର ସମସ୍ୟା ସୁଧାରି ପାରେନାହିଁ । ମାତ୍ର ସମସ୍ୟାର ସମାଧାନ ଏକାନ୍ତ ଆବଶ୍ୟକ । କିନ୍ତୁ ସମାଧାନ ପାଇଁ ଲୋଡ଼ା ଜଣେ ବିଶେଷଜ୍ଞଙ୍କର ପ୍ରତିଭା ।

ସେଦିନ ଜଣେ ଯୁବ ସାମ୍ୟବାଦୀ ଏହି ବିଷୟ ମୋ ସହିତ ଚର୍ଚ୍ଚା କରୁଥିଲେ । ସେ ଅତ୍ୟନ୍ତ ଆଗ୍ରହୀ ଥିଲେ । କିନ୍ତୁ ନିଜର ସ୍ୱାଧୀନ ଚିନ୍ତା ଭୁଲି ନଥିଲେ । ମୁଁ ପଚାରିଲି- 'ସାଧାରଣ ଲୋକେ ହିଂସାକୁ ଅସ୍ତ୍ର ଭାବେ ବ୍ୟବହାର କରିବା ଉଚିତ୍ କି ?'

ସେ କହିଲେ – 'ନାଁ ସାଧାରଣ ନିୟମ ଦୃଷ୍ଟିରୁ ନୁହେଁ । କିନ୍ତୁ ନିର୍ଦ୍ଦିଷ୍ଟ ପରିସ୍ଥିତିରେ ଏବଂ ଯଥେଷ୍ଟ ସତର୍କତାର ସହ ସାଧାରଣ ଲୋକେ ହିଂସାକୁ ଅସ୍ତ୍ର ରୂପେ ଗ୍ରହଣ କରିପାରିବେ ।'

ମୋର ମତହେଲା– 'ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟରେ ଜନସାଧାରଣଙ୍କୁ ଅସ୍ତ୍ର ବ୍ୟବହାର ପାଇଁ ଅନୁମତି ଦିଆଗଲା– ହେଲେ ସେମାନଙ୍କୁ ଏଥିରୁ କ'ଣ ମିଳିବ ? ଧରାଯାଉ ଗୋଟିଏ ବିପ୍ଳବ ପାଇଁ କାର୍ଯ୍ୟ ଆରମ୍ଭ ହୋଇଗଲା । ଏହା ପରବର୍ତ୍ତୀ ସମୟରେ ଫଳବତୀ ହେବ, ଗୋଟିଏ ଦାନପାଣ୍ଠି ଭଳି । କୃତ୍ରିମ ଭାବେ କିଛି ସମୟ ପାଇଁ କୌଣସି କାର୍ଯ୍ୟରେ ପ୍ରବୃତ୍ତ ହେଲେ ଏହା ଉଧାର ପଇସା ଭଳି କାମ କରେ । ସାଧାରଣ ଲୋକଙ୍କର ପ୍ରକୃତି ସହ ଏହାକୁ ଯୋଡ଼ାଯାଇ ନପାରେ । ପରିଣାମତଃ କିଛି ପାରିବାର ଲୋକଙ୍କ ହାତରେ କ୍ଷମତା ଠୁଳ ହୁଏ । ପୁଂଜି ମଧ୍ୟ ସେମାନଙ୍କ ହାତରେ ରହେ । ଯଦି ତମେ ଭାବୁଥାଅ ଯେ ଏହାଦ୍ୱାରା ଲୋକଙ୍କ ପ୍ରକୃତିରେ ମୋଟାମୋଟି ସ୍ଥାୟୀ ପରିବର୍ତ୍ତନ ସଂଭବ, ମୁଁ କହୁଛି ଏହା ବିରାଟ ବିପର୍ଯ୍ୟୟ ଡାକି ଆଣିବ । ସେ କ୍ଷେତ୍ରରେ ମଣିଷ ଗୋଟିଏ ରାକ୍ଷସ ପାଲଟିଯିବ । ଏହାର ପରିଣାମ ଅତ୍ୟନ୍ତ ଭୟାବହ ହେବ । ତମେ ଏହା କଳ୍ପନା କରି ପାରିବ ନାହିଁ ।

ମୋର ଯୁବ ବନ୍ଧୁ ଜଣକ ଏକଥା ଶୁଣି କହିଲେ– 'ଯାହା ହେବାର ହେଉ । ପ୍ରଥମେ ବର୍ତ୍ତମାନ ଅବସ୍ଥାର ପରିବର୍ତ୍ତନ ଘଟୁ । ଗୋଟିଏ ପାଦ ହିଁ ଯଥେଷ୍ଟ ।'

'ତମେ ଗୋଟିଏ ସାମୟିକ ଭ୍ରମର ବଶୀଭୂତ । ଧରାଯାଉ ବର୍ତ୍ତମାନର ଅବସ୍ଥା ବଦଳିଗଲା । କିନ୍ତୁ ବର୍ତ୍ତମାନର ଦୁଃସ୍ଥିତି ଅପେକ୍ଷା ପ୍ରତିକ୍ରିୟା ଆହୁରି ଭୟାବହ ହେବ ।'

'ତାହା ହିଁ ହେଉ'– ସେ କହିଲେ, 'ପ୍ରତିକ୍ରିୟା ଆରମ୍ଭ ହେଲେ ଆମେ ସେ କଥା ଚିନ୍ତା କରିବା ।'

'ଏହା ଏକ ବିଭ୍ରାନ୍ତ ଓ କ୍ଲେଶଯୁକ୍ତ ମନର ଉତ୍ତର । ଜଣେ ବିଜ୍ଞାନ ସମ୍ମତ ବ୍ୟକ୍ତିର ନୁହେଁ । ସାମ୍ୟବାଦୀମାନେ ବୈଜ୍ଞାନିକ ଚିନ୍ତନର ଦାବି ସବୁବେଳେ ଉପସ୍ଥାପନ କରିଥାନ୍ତି ।'

ବନ୍ଧୁ ଜଣକ କହିଲେ– 'ହଁ, ସେମାନେ ସେଇଭଳି ଦାବି କରନ୍ତି ଓ ସେକଥା ଜୋର ଦେଇ କହନ୍ତି । ଥରେ କ୍ଷମତା ପାଇଲେ ସ୍ଥାୟୀ ବ୍ୟବସ୍ଥା ହୋଇଯିବ । ମୁଁ ସେଇ ସଂଭାବନା ଉପରେ ବିଶ୍ୱାସ କରେ ନାହିଁ । ପୃଥିବୀରେ କିଛି ସ୍ଥାୟୀ ନୁହେଁ । କିନ୍ତୁ ଆଜିର ପିଢ଼ି ପାଇଁ ଏହା ଅତ୍ୟନ୍ତ ଜରୁରୀ । ଦେଶରୁ ପୁଂଜିପତିଙ୍କ ପ୍ରାଧାନ୍ୟ ହଟାଇବାକୁ ପଡ଼ିବ । ଆଗାମୀ ପିଢ଼ି ସେମାନଙ୍କ ସମସ୍ୟା ସମାଧାନ କରିବେ ।

ଖାଣ୍ଟି ସାମ୍ୟବାଦୀମାନେ ନିଶ୍ଚୟ ଏହି ବନ୍ଧୁଙ୍କୁ (କମ୍ରେଡ୍) ଜଣେ ଚଞ୍ଚଳମନା ବୋଲି ନିଶ୍ଚୟ ଭାବିବେ । ତାଙ୍କୁ ମୁଁ ଜଣେ ପାଗଳ ସହିତ ତୁଳନା କରେ । ଯଦି ସାମ୍ୟବାଦୀ ଦର୍ଶନ ସମାଜ ପାଇଁ ସ୍ଥାୟୀ ବ୍ୟବସ୍ଥା ଚାହୁଁଥାଏ, ତାହେଲେ ଏହା କେବଳ ଅଫିମ ନିଶା ଭଳି କାମ କରିବ । ଜଣେ ସାଧାରଣ ସାମ୍ୟବାଦୀର ମାନସିକ ପୃଷ୍ଠଭୂମି ହେଉଛି ହଠାତ୍ ଲାଭ ପାଇବା ।

ଏହା ଜଣେ ମାଆର ସ୍ନେହ ଓ ତୀବ୍ର ବ୍ୟସ୍ତତା ଭଳି ହୋଇପାରେ । ମାତ୍ର ଜଣେ ଶ୍ରେଷ୍ଠ ମାଆ, ଭାରତୀୟ ଭାଷାରେ ଯାହାକୁ ଗୁରୁ ବୋଲି କୁହାଯାଏ, ତାର ଭାବନା ଏଥିରେ ନଥାଏ ।

## ଦୁଇ ପାଖ ଧାରୁଆ ଅସ୍ତ୍ର (The double edged weapon)

ଭାରତର ନିରକ୍ଷର ଜନସାଧାରଣଙ୍କ ଦୁରବସ୍ଥା ଯେପରି ଥିଲା ସ୍ୱାଧୀନତା ଲାଭ ପରେ ମଧ୍ୟ ସେପରି ଅଛି । ସେମାନେ ଏଥିରୁ ଉଦ୍ଧାର ପାଇବା ପାଇଁ ଯଥାସାଧ୍ୟ ଉଦ୍ୟମ କରୁଛନ୍ତି । ବିଭିନ୍ନ ଆଦର୍ଶ ଓ ମତବାଦ ବୁଝିବା ପାଇଁ ସେମାନଙ୍କର ସାମର୍ଥ୍ୟ ନାହିଁ କି ବିଶ୍ରାମ ନାହିଁ । ଯେଉଁ ଭଗବାନ ତାଙ୍କର ଗୁହାରି ଶୁଣିବେ, ସେମାନେ ତାଙ୍କୁ ହିଁ ଗ୍ରହଣ କରିବେ । ସୁତରାଂ ବହିର ଶେଷରେ କିଶୋରିଲାଲ୍ ଭାଇ ଯେଉଁ ସତର୍କ ସୂଚନା ଦେଇଛନ୍ତି, ତାକୁ ଉପେକ୍ଷା କରାଯାଇ ନପାରେ । ଏଠାରେ ସାମ୍ୟବାଦର ନିନ୍ଦାଗାନ କରାଯାଉନାହିଁ କି ବିଶ୍ୱାସନୀୟ କରାଯାଉନାହିଁ କି ଶକ୍ତିବଳରେ ଚାପି ଦେବାର ପ୍ରୟାସ କରାଯାଉନାହିଁ । ମୌସୁମୀ ପ୍ରବାହରେ ଯେପରି ସବୁ ଝରଣା ଓ ନଦୀର ଜଳ ସାଗରାଭିମୁଖୀ ହୁଏ, ସେହିପରି ସ୍ୱରାଜରେ ପ୍ରତିଷ୍ଠିତ ହେଲେ ସବୁ କର୍ମୀମାନଙ୍କ ସେବା ଗ୍ରାମାଭିମୁଖୀ ହେବ, ଦୀନ ଦରିଦ୍ରାଭିମୁଖୀ ହେବ ।

ସୌଭାଗ୍ୟର କଥା ସମସ୍ତ ବାଧାବିଘ୍ନ ସତ୍ତ୍ୱେ ଜନସାଧାରଣଙ୍କ ହୃଦୟ ମଜବୁତ୍ ଅଛି । ଗ୍ରାମର ଲୋକମାନେ ଏବେ ବି ଗାନ୍ଧିଙ୍କ ପନ୍ଥାରେ ବିଶ୍ୱାସ କରନ୍ତି । ଗାନ୍ଧିଙ୍କ ସହକର୍ମୀମାନେ ବର୍ତ୍ତମାନର ସରକାର ଗଠନ କରିଛନ୍ତି । ବିରାଟ ରାଜନୈତିକ ସଂଗଠନ କଂଗ୍ରେସ ମଧ୍ୟ ଗାନ୍ଧିଙ୍କ ଦ୍ୱାରା ସଯତ୍ନ ପାଳିତ ହୋଇଥିଲା । ସର୍ବୋଦୟ-ରଚନାତ୍ମକ କର୍ମୀମାନେ ମଧ୍ୟ ଗାନ୍ଧିବାଦୀ ଦର୍ଶନର ଏକାନ୍ତ ଅନୁଗାମୀ । ଭାରତର ସମାଜବାଦୀମାନେ ଗାନ୍ଧିଜୀଙ୍କ ସନ୍ତାନ । ସେମାନେ ଭାରତରେ ସତ୍ୟାଗ୍ରହ-ଭିତ୍ତିକ ସମାଜବାଦ ପ୍ରତିଷ୍ଠା ପାଇଁ ଘୋଷଣା କରିଛନ୍ତି । ଯଦି ଏହି ସମସ୍ତ ସଂଗଠନ ଓ ଦଳ ସମବାୟ ସୂତ୍ରରେ ସେମାନଙ୍କ ସାମର୍ଥ୍ୟର ଉପଯୋଗ କରନ୍ତି, ତା'ହେଲେ ଦାରିଦ୍ର୍ୟ, ଅଜ୍ଞତା, ଅଭାବର ସ୍ଥାନ କେଉଁଠି ରହିବ ? ଏହି ଚାରିସଂସ୍ଥା ଚାରି ସ୍ୱତନ୍ତ୍ର ମାର୍ଗରେ ଚାଲିଛନ୍ତି । ପ୍ରତ୍ୟେକ ଅନ୍ୟ ତିନିଙ୍କ କୁତ୍ସାରଟନା କରୁଛନ୍ତି । ଫଳରେ ପଞ୍ଚମ ଶକ୍ତି ଦେଶ ଭିତରକୁ ଦ୍ରୁତ ଗତିରେ ମାଡ଼ି ଚାଲିଛି । ଏହି ପଞ୍ଚମ କିଏ ? ଉପନିଷଦର ଭାଷାରେ ଏହା ମୃତ୍ୟୁ ।

ଜଣଙ୍କର ଅଭିଯୋଗ ହେଉଛି – 'ଲୋକମାନେ ଆକ୍ଷରିକ ଅର୍ଥରେ ଅନାହାରରେ ମରୁଛନ୍ତି ।' ଆଉଜଣେ କହୁଛନ୍ତି- 'ନାଁ, ସେମାନେ ଅନାହାରରେ ମରୁନାହାନ୍ତି । କିଛି ନା କିଛି ରୋଗର ଶିକାର ହୋଇଛନ୍ତି, ଏଥିରେ ସନ୍ଦେହ ନାହିଁ । ଅବସ୍ଥା ଏପରି ହୋଇଛି । ସ୍ୱାମୀ ରାମଦାସ କହନ୍ତି- ଖାଇବାକୁ ନାହିଁ, କୁଆଡ଼େ ଯିବାକୁ ଜାଗାନାହିଁ । ମୁଁ ଗୀତ ଗାଇବି କିପରି ? କେଉଁଠି ଯାଇ ମାଗିବି ?

କିନ୍ତୁ ମୁଁ କାହାକୁ ଦୋଷ ଦେଉନାହିଁ କି ହତାଶ ନୁହେଁ । କାରଣ ଆମର ଦେଶ ବିରାଟ । ତାର ସମସ୍ୟା ମଧ୍ୟ ବହୁତ । ମତଭେଦ ମଧ୍ୟ ବହୁତ । ସେଥିପାଇଁ ମୁଁ ହତାଶ ନୁହେଁ । କାରଣ ମୋ ହାତରେ ଉପରକୁ ଉଠିବାର ଅସ୍ତ୍ର ରହିଛି ।

ଥରେ ଆଶ୍ରମରେ କଥାବାର୍ତ୍ତା ଚାଲିଥିବା ବେଳେ ଜଣେ ପ୍ରସ୍ତାବ ଦେଲେ ଦେଶର ବିଭିନ୍ନ ସ୍ଥାନରେ କୂଅସବୁ ଖୋଳାଯାଇ ପାରନ୍ତା । ତା'ହେଲେ ଖାଦ୍ୟ ଉତ୍ପାଦନ ବଢ଼ନ୍ତା । ସରକାର ଏ ଦିଗରେ ପଦକ୍ଷେପ ନେବା ଉଚିତ । ମୁଁ କହିଲି- 'ଆମେଇ ତ ସରକାର । ସରକାର ଆଉ କିଏ ? ଲୋକମାନେ ତ ନୁହଁନ୍ତି । ଆସ, ଆମେ ଆମ ବାଡ଼ିରେ କୂଅଟିଏ ଖୋଳିବା କାମରେ ଲାଗିବ ।' ନୂଆ ଖୋଳାଳିମାନଙ୍କର ଆଗରୁ ଖୋଳିବା କାମରେ ଅଭିଜ୍ଞତା ନଥିଲା । ବୁଢ଼ା ଖୋଳାଳି କାମ କଲା । ନୂଆ ଖୋଳାଳିମାନଙ୍କର କୂଅର ଗଭୀରତା ତଥା ମାଟିତଳେ ପାଣିର ସ୍ତର ସଂପର୍କରେ ଧାରଣା ନଥିଲା । ମାତ୍ର ବୁଢ଼ା ଖୋଳାଳିର ଅଭିଜ୍ଞତା ଥିଲା । ସେ ଖୋଳି ଚାଲିଲା । କ୍ରମେ ତଳୁ ପାଣି ବାହାରିଲା । ପାଖାପାଖି ଅଞ୍ଚଳରୁ ଲୋକମାନେ କୂଅ ଦେଖିବାକୁ ଆସିଲେ । ପାଣି ମଧ୍ୟ ପିଇଲେ । ସ୍ଥାନଟି ଗୋଟିଏ ତୀର୍ଥସ୍ଥଳରେ ପରିଣତ ହେଲା ।

ଏକ ଗ୍ରାମର ମୁଖିଆ କହିଲେ- 'ଯେତେବେଳେ ବୁଢ଼ା କୂଅଟିଏ ଖୋଳିଦେଲା, ଆମେ କାହିଁକି ପାରିବୁ ନାହିଁ ।' ତାପରେ ସେ ନିଜ ଗ୍ରାମରେ କୂଅଟିଏ ଖୋଳିଲେ । ପାଖ ଗାଁର ଯୁବକମାନେ ମଧ୍ୟ ଖୁବ୍ ବଢ଼ିଆ କାମଟିଏ କଲେ । ସେମାନେ ନିଜ ନିଜ ମଧ୍ୟରେ ସ୍ଥିର କଲେ- 'ଏଇ ଦୀପାବଳୀ ଛୁଟିରେ ବାବାଙ୍କ କୂଅରେ କାମ ଆରମ୍ଭ ହେବ । ବାରଜଣ ଯୁବକ ଆସି କାମରେ ଯୋଗଦେଲେ । ସେମାନେ ଚାରିଘଣ୍ଟାର ଶ୍ରମଦାନ କଲେ । ଭଗବାନ ଯଦି ସେମାନଙ୍କ ହୃଦୟରେ ଏତେ ଉତ୍ସାହ ସୃଷ୍ଟି କରିପାରିଲେ, ଆମେ ହତାଶ ହେବା କାହିଁକି ? ରାମ ଦାସ କହିଲେ- 'ମୁଁ ଭିକ ମାଗିବାକୁ କେଉଁଠିକି ଯିବି ? ମୁଁ କ'ଣ ଆମେରିକା ଯିବି । ନାଁ ସ୍ୱାଧୀନ ଭାରତର ଲୋକମାନେ ଭିକ ପାଇଁ ହାତ ପତାଇବେ ? ଆମେ ଶ୍ରମ ଦେବତାର ପୂଜା କରିବା । ତାଙ୍କୁ ଆମର ଖାଦ୍ୟ ପାଇଁ ପ୍ରାର୍ଥନା କରିବା । ସେ କହନ୍ତି- 'ମାଗିଲେ ପାଇବ ଏବଂ ଖୋଜିଲେ ଦେଖିବ ।'

ଶେଷକଥା- ମୁଁ ଭାରତର ମୁକ୍ତି ଦେଖିପାରୁଛି । ଏହା କେବଳ ଦିପାଖ ଧାରୁଆ ଅସ୍ତ୍ରଦ୍ୱାରା ସଂଭବ । ପ୍ରଥମଟି ହେଉଛି- ଅର୍ଥର ପ୍ରଲୋଭନରୁ ମୁକ୍ତି । ଦ୍ୱିତୀୟଟି ହେଉଛି- ଦୈହିକ ଶ୍ରମର ଶକ୍ତି । ଏଇଥିରେ ରହିଛି ଗାନ୍ଧିଙ୍କ ଦର୍ଶନର ଚରମ ସଫଳତା । ଅର୍ଥାତ୍ ସାମ୍ୟବାଦ ସହ ଗାନ୍ଧିଙ୍କ ବିଚାରର ସମନ୍ୱୟ କିମ୍ବା ସାମ୍ୟବାଦ ଓ ପୁଞ୍ଜିବାଦ ବିଷର ମହୌଷଧି ।

ବିନୋବା

ପରମଧାମ ପୌନାର

ତା. ୨୫.୧୧.୧୯୫୦

